# ଦେଶ ବିଦେଶର ମଜା କଥା

ଲେଖକ :

**ଶ୍ରୀ ଚନ୍ଦ୍ରଶେଖର ରଥ**

ପ୍ରଥମ ସଂସ୍କରଣ—୧୯୯୫




ପ୍ରକାଶକ

ଓଡ଼ିଶା ଜଗନ୍ନାଥ କମ୍ପାନୀ

ବାଲୁବଜାର, କଟକ-୨

ମୂଲ୍ୟ—୧୨-୦୦

# ଉତ୍ସର୍ଗ

ଲୁପ୍ତଗ୍ରନ୍ଥୋଦ୍ଧାରକ ତଥା ବହୁ ପ୍ରାଚୀନ ପୁସ୍ତକର

ପ୍ରକାଶକ—ଶ୍ରୀଯୁକ୍ତ ବିଦ୍ୟାଧର ସାହୁ,

ଧର୍ମଗ୍ରନ୍ଥ ଷ୍ଟୋର, କଟକ-୨

ମହୋଦୟଙ୍କୁ

“ଦେଶ ବିଦେଶର ମଜାକଥା”

ନୂତନ ବର୍ଷ
ତା ୧ । ୧୧ । ୮୪ରିଖ

ଗୁଣମୁଗ୍ଧ କଥା ଶିଳ୍ପୀ
ଚନ୍ଦ୍ରଶେଖର ବଳ
କବି କୁଟୀର, ଯାଜପୁର

# ସୂଚୀପତ୍ର

# ଦେଶ ବିଦେଶର ମଜା କଥା

## ବିଚିତ୍ର ବଗିଚା

ପ୍ରାଚୀନ କାଳରେ ହାସିମ୍ ଓ କାଶିମ୍ ନାମରେ ଦୁଇଜଣ ଲୋକ ବାସ କରୁଥିଲେ । ସେମାନେ ଖୁବ୍ ଦରିଦ୍ର ଥିଲେ । ହାସିମ୍‌ର ଖଣ୍ଡେ ଜମି ଥିଲା । ସେ ସେହି ଜମିରୁ ଫସଲ କରି ଚଳୁଥିଲା । କାଶିମ୍‌ର ଗୋଟିଏ ମେଷପଲ ଥିଲା । ସେମାନେ ପରସ୍ପରକୁ ସହାଯ୍ୟ କରୁଥିଲେ । ଉଭୟ ବନ୍ଧୁଙ୍କର ସ୍ତ୍ରୀ ମରିଯାଇଥିଲେ । କିନ୍ତୁ ହାସିମ୍‌ର ଗୋଟିଏ ସୁନ୍ଦରୀ ଶାନ୍ତ କୋମଳ-ମତି ଝିଅଟିଏ ଥିଲା । ସିଏକି ତା ଦାରିଦ୍ର୍ୟର ଏକମାତ୍ର ଭରସା ଥିଲା ଓ କାଶିମ୍‌ର ଭରସାଥିଲା ତାର ଗୋଟିଏ ମାତ୍ର ଆଜ୍ଞାନୁବର୍ତ୍ତୀ ପୁତ୍ର ।

ଦୈବ ବଶତଃ ଥରେ ଏକ ଦୁରାରୋଗ୍ୟ ବ୍ୟାଧିରେ କାଶିମ୍‌ର ସବୁଯାକ ମେଣ୍ଢା ମରିଗଲେ । ସେ ସମ୍ବଳହୀନ ହୋଇ ଦୁଃଖରେ ହାସିମ୍ ପାଖକୁ-ଗଲା ଓ ତାହାର ଦୁଃଖ ବିଷୟ ବର୍ଣ୍ଣନା କରି ସାହାଯ୍ୟ ଭିକ୍ଷା କଲା । ଏହା ଶୁଣି ହାସିମ୍ କହିଲା ବନ୍ଧୁ ! ମୋର ଜମିରୁ ଅଧେ ମୁଁ ତୁମକୁ ଦେଉଛି । ତାହା ଏଥର ତୁମ ନିଜର । ସେହିଦିନଠାରୁ କାଶିମ୍ ଅଧା ଜମି ଚାଷ କରିବାକୁ ଲାଗିଲା ।

ଦିନପରେ ଦିନ ମାସ, ବର୍ଷ ବିତିଗଲା ଦିନେ କାଶିମ୍ ଜମି ଚାଷ କରୁଥିଲା । ହଠାତ୍ ଲଙ୍ଗଳ ମୁନ ବାଜି କଣ ଗୋଟାଏ ଠନ୍ ଠନ୍ ହେଲା । ସେ ତେଣୁ ଖୁବ୍ ଆଗ୍ରହରେ ଅତ୍ୟନ୍ୟ ଗହ୍ବରଆ

କରି ମାଟି ଖୋଳିଲା ଓ ତାହା ମଧ୍ୟରୁ ମାଠିଆରେ ମାଠିଏ ସୁନାର ଅସର୍ଫି ଥିବାର ଦେଖିଲା । ସେ ଆନନ୍ଦରେ ବିହ୍ୱଳ ହୋଇଗଲା । ଓ ପରକ୍ଷଣରେ ମୋହର ମାଠିଆଟିକୁ ଧରି ହାସିମ୍‌ର କୁଡ଼ିଆ-ଆଡ଼େ ଦୌଡ଼ିଲା । କୁଡ଼ିଆ ପାଖରେ ପହଞ୍ଚି ସେ ପାଟିକରି କହିଲା—ହାସିମ୍ ତୁମର ସୁଖର ସମୟ ଆସିଗଲା । ମୁଁ ତୁମ ଜମି ଖୋଳି ମାଠିଆ ଭରି ସୁନା ଅସର୍ଫି ପାଇଛି ।

ଏହା ଶୁଣି ହାସିମ୍ ମନ୍ଦମନ୍ଦ ହସି କହିଲା ବନ୍ଧୁ, ମୁଁ ତୁମର ନିସ୍ୱାର୍ଥପରତା ବିଷୟ ଜାଣେ । ସେ ମୋହର ଭରି ମାଠିଆଟା ମୋର ନୁହେଁ ତୁମର, କାରଣ ତୁମେ ତୁମର ନିଜ ଜମିରୁ ସୁନା ପାଇଛ ।

କାଶିମ୍ କହିଲା ବନ୍ଧୁ ମୁଁ ତୁମର ବଦାନ୍ୟତା ନିକଟରେ ମୁଣ୍ଡ ନଇଁଛି । କିନ୍ତୁ ତୁମେ ମତେ ଯେତେବେଳେ ଜମି ଦେଲେ ସେତେବେଳେ ତାହାତଳେ କଣ ଲୁଚିରହିଛି ତାହା ଦାନ କରି ନଥିଲ । ଏହି ବିଷୟ ଧରି ଦୁଇବନ୍ଧୁ ଦୀର୍ଘକାଳ ପର୍ଯ୍ୟନ୍ତ ଯୁକ୍ତିତର୍କ କଲେ । ଶେଷକୁ ହାସିମ୍ କହିଲା, କାଶିମ୍ ! ମୋର ଗୋଟିଏ ସାବାଳିକା ଝିଅ ଅଛି, ତୁମର ଗୋଟିଏ ସାବାଳକ ପୁଅ ଅଛି । ତେଣୁ ଆମେ ଦୁହିଁଙ୍କୁ ଗୃହ ବିବାହ ଦେବା ଓ ଏହି ସୁନା ଅସର୍ଫି ସମସ୍ତ ସେମାନଙ୍କୁ ଉପହାର ଦେବା । ଆଉ ଆମ ପିଲାଙ୍କର ଭବିଷ୍ୟତରେ ଦୁଃଖ ରହିବ ନାହିଁ ।

ଯେତେବେଳେ ଦୁଇବନ୍ଧୁ ସେମାନଙ୍କର ନିଷ୍ପତ୍ତି ଘୋଷଣା କଲେ ପିଲା ଦୁହିଁଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେହିଦିନ ସେମାନଙ୍କର ବିବାହ ହେଲା । ବିବାହ ଭୋଜି ଖୁବ୍ ଜାକଜମକରେ

କରିଗଲା । ଏହି ନବଦମ୍ପତି କାଶିମର କୁଟୀରରେ ଯାଇ ରହିଥିଲେ । ଏବଂ ହାସିମ ଯାଇ କାଶିମର ଘରେ ତା ସହ ରହିଲା ।

ଅନେକ ଦୁଇଦିନ ଯାଇଛି କି ନାହିଁ ସେହି ନବଦମ୍ପତି ସେମାନଙ୍କର ବାପାମାନଙ୍କୁ ଡକାଇ କହିଲେ ଏହି ମୋହର ମାଠିଆ ଯାହା ଆପଣମାନେ ଗ୍ରହଣ କରୁନାହାଁନ୍ତି ତାହା ଆମେ ଗ୍ରହଣ କରିବୁ କିପରି ? ଏହି ସୁନା ବ୍ୟତୀତ ଆମେ ସୁଖି— ସଂସାରର ସମସ୍ତ ପ୍ରକାର ଅର୍ଥଠାରୁ ଆମର ପ୍ରେମ ମୂଲ୍ୟବାନ୍ । ସେମାନେ ସେହି ସୁନା ମାଠିଆକୁ କୁଡ଼ିଆ ମଝିରେ ରଖି ଦେଲେ ।

ଏବେ ଦୁଇ ବନ୍ଧୁଙ୍କ ମଧ୍ୟରେ ସୁନାର ମାଲିକାନା ବିଷୟରେ ପୁଣି ଯୁକ୍ତିତର୍କ ସୁରୁ ହେଲା । ସେମାନେ ସେମାନଙ୍କର ଗ୍ରାମଠାରୁ କିଛିତ୍ ଦୂରରେ ରହୁଥିବା ଜଣେ ସାଧୁ ବାବାଙ୍କ ପାଖକୁ ନିଷ୍ପତ୍ତି ନିମନ୍ତେ ଗଲେ ।

ସାଧୁ ମହାଶୟ ଖଣ୍ଡେ ଚିରଣ୍ଡା ମଇଳା ଗରମ କମ୍ବଳ ଘୋଡ଼ି ହୋଇ ବସିଥିଲେ । ତାଙ୍କ ପାଖରେ ତାଙ୍କର ଚାରି ଜଣ ଚେଲା ଥିଲେ । ବନ୍ଧୁ ଦ୍ୱୟ ତାଙ୍କର ସ୍ୱ ସ୍ୱ ବକ୍ତବ୍ୟ ସାଧୁଙ୍କୁ ଜଣାଇଲେ । ସାଧୁ ମହାଶୟ ସମସ୍ତ ବିଷୟ ଶୁଣିସାରି ନୀରବ ରହିଲେ । ଏହା- ପରେ ତାଙ୍କ ଚେଲାଙ୍କୁ କହିଲେ, ମୋତେ କହ ତୁମେ ଯଦି ମୋ ସ୍ଥାନରେ ଥାନ୍ତ ତାହାହେଲେ ବନ୍ଧୁଦ୍ୱୟଙ୍କ ସମସ୍ୟାକୁ କିପରି ସମାଧାନ କରିଥାନ୍ତ ?

ସବୁଠାରୁ ବୟସ୍କ ଚେଲାଟି ଉତ୍ତର କଲା, ମୁଁ ଏହି ଧନରତ୍ନ ପୂର୍ଣ୍ଣ ମାଠିଆଟି ଦେଶର ଶାସକଙ୍କୁ ଦେଇ ଦେବାକୁ ପରାମର୍ଶ ଦିଅନ୍ତି । କାରଣ ଶାସକ ହେଉଛନ୍ତି ଏ ଧନରତ୍ନର ମାଲିକ୍ ।

ଦ୍ୱିତୀୟ ବ୍ୟକ୍ତିଟି କହିଲା—ମୁଁ ଦାବୀ କରିଥାନ୍ତି ସେ ସୁନା ହେଉଛି ମୋର ନିଜର । କାରଣ ସବୁ ବିବାଦୀୟ ଜିନିଷ ଉପରେ ବିଚାରକର ଅଧିକାର ରହିଛି ।

ଏହାପରେ ତୃତୀୟ ଚେଲାଟି କହିଲା—ଯଦି ଏହି ସୁନା କାହାର ନୁହେଁ ପ୍ରତ୍ୟେକ ନେବାକୁ ଅସ୍ୱୀକାର କରୁଛନ୍ତି । ତେଣୁ ମୁଁ ସେ ସୁନାକୁ ପୁଣି ମାଟି ଭିତରେ ପୋତି ଲୁଚାଇ ଦେବାକୁ ଆଦେଶ ଦିଅନ୍ତି ।

ସବୁଠାରୁ ସାନ ବ୍ୟକ୍ତିଟି କହିଲା, "ମୁଁ ଏହି ସୁନାକୁ ନେଇ ରାଜ୍ୟର ଅନୁର୍ବର ଶ୍ରେଣୀ ଅଞ୍ଚଳରେ ସ୍ୱାସ୍ଥ୍ୟପ୍ରଦ ଏକ ବୃହତ ଉଦ୍ୟାନ ନିର୍ମାଣ କରନ୍ତି । ଫଳରେ ସବୁ ଦରିଦ୍ର ଓ କ୍ଳାନ୍ତ ଲୋକେ ଆସି ସେଠାରେ ବିଶ୍ରାମ ନିଅନ୍ତେ ଓ ତାହାର ଫଳ ଖାଇ କ୍ଷୁଧା ତୃଷା ନିବାରନ୍ତେ ।

ସାଧୁ ଏହି କଥା ତାଙ୍କର କନିଷ୍ଠ ଚେଲା ମୁଖରୁ ଶୁଣି ତାଙ୍କୁ ଉଠିଆସି କୋଳାଗ୍ରତ କଲେ ତାଙ୍କର ଆଖି ଛଳ ଛଳ ହୋଇ ଆସିଲା । ସେ କହିଲେ, ଲୋକେ ଯେ କହନ୍ତି "ଯଦି ଅଳ୍ପ ବୟସ୍କ ଗୋଟିଏ ଲୋକ ଅତି ବୁଦ୍ଧିମାନ ହେବେ ତାକୁ ବଡ଼ ଭଲ ଦେଖ । ଏହା ଠିକ୍ ବାଳକ ! ତୁମ ବିଚାର ଠିକ୍ ହୋଇଛି । ଏହି ସୁନାକୁ ନେଇ ରାଜାଙ୍କ ରାଜଧାନୀକୁ ଯାଅ । ଭଲ ଭଲ ମଞ୍ଜି ଆଣି ଯେଉଁ ବଗିଚା ବିଷୟ କହୁଥିଲ ସେହି ବଗିଚା ନିର୍ମାଣ କର । ଆଜି ମନେରଖ ଏହି ଯେଉଁ ଉଦାର ବ୍ୟକ୍ତି ସୁନା ନେଇ ଆସିଥିଲେ ସାରା ଜୀବନ ଧରି ସେହି ଦରିଦ୍ର ଲୋକମାନଙ୍କ ମଧ୍ୟରେ ରହିବେ । ଯୁବକଟି ସାଧୁଙ୍କ ଆଜ୍ଞା ପାଳନକରି ଉକ୍ତ ସୁନା ମୋହର ନେଇ ରାଜଧାନୀକୁ ବାହାରିଲା, ସେ ସହରରେ ପହଞ୍ଚି ସିଧା ବଜାରରେ

ଯାଇ ପଡ଼ୋଶୀଙ୍କ ଏବଂ ଫଳଗଛ ପାଇଁ ମଞ୍ଜି କିଣିବ ବୋଲି ବ୍ୟବସାୟୀଙ୍କୁ ଖୋଜିଲା । ସେ ଅନେକ ସମୟ ବୁଲି ବୁଲି ଦୋକାନ ଗୁଡ଼ିକ ଆଗରେ ଥିବା ସୁନ୍ଦର ଚକଚକିଆ ଦ୍ରବ୍ୟମାନ ଦେଖିବାକୁ ଲାଗିଲା । ହଠାତ୍ ସେ ପଛରୁ ଓଟର ଘଣ୍ଟି ଶୁଣିବାକୁ ପାଇଲା । ଓଟ ବାହାକମାନେ ଖୁବ୍ ଜୋରରେ ପାଟିତୁଣ୍ଡ କରୁଥାନ୍ତି । ଯୁବକଟି ବୁଲି ପଡ଼ି ଦେଖିଲା ଏକ ବିରାଟ ଓଟପଲ ଅସମ୍ଭବ ଧରଣର ବୋଝ ନେଇ ଧାଡ଼ି ଧାଡ଼ି ହୋଇ ବଜାରର ଛକ ପାର ହେଉଛନ୍ତି ଏବଂ ଯୋଡ଼ା ଯୋଡ଼ା ହୋଇ ବନ୍ଧା ହୋଇ-ଥିବା ପକ୍ଷୀମାନ ବହି ନେଉଛନ୍ତି । ପକ୍ଷୀମାନେ କରୁଣ ଚିତ୍କାର କରୁଥିଲେ । ଏହି ଦୃଶ୍ୟ ଦେଖି ଯୁବକର ହୃଦୟ ବ୍ୟଥିତ ହୋଇ-ଗଲା । ସେ ଦର୍ଶକ ଗହଳୀ ମଧ୍ୟରେ ପଶି ଓଟମାନଙ୍କର ମାଲିକକୁ ଭେଟିଲା ଓ କହିଲା ମହାଶୟ ଏହି ସୁନ୍ଦର ପକ୍ଷୀମାନଙ୍କୁ ଏପରି କଷ୍ଟ ଦେବାକୁ କିଏ ଆଦେଶ ଦେଇଛି ? ମାଲିକ ଉତ୍ତର ଦେଲା ଆମେ ଏଗୁଡ଼ିକ ରାଜାଙ୍କ ଉଆସକୁ ନେଉଛୁ । ଏହା ରାଜାଙ୍କର ସାନ୍ଧ୍ୟ ଭୋଜନ ରୂପେ ବ୍ୟବହୃତ ହେବ, ରାଜା ଏଥିପାଇଁ ଆମକୁ ପାଞ୍ଚଶହ ସୁନା ମୋହର ଦେବେ ।

ମୁଁ ତୁମକୁ ତାହାଠାରୁ ଅଧିକ ବେଶୀ ସୁନା ମୋହର ଦେବି, ତୁମେ ସେ ପକ୍ଷୀ ଗୁଡ଼ିକ ଛାଡ଼ି ଦିଅ, ଯୁବକ ମୋହର ଥଳୀ ବାହାର କରି ଓଟ ମାଲିକକୁ ଦେଖାଇଲା । ଓଟ ମାଲିକ ଖୁବ୍ ଆଶ୍ଚର୍ଯ୍ୟ ହୋଇଗଲା । ତାହାପରେ ସେ ପକ୍ଷୀମାନଙ୍କୁ ଛାଡ଼ି ଦେବାକୁ ତାର ସାଥୀ ଓଟବାଲାମାନଙ୍କୁ ନିର୍ଦ୍ଦେଶ ଦେଲା । ପକ୍ଷୀ ଗୁଡ଼ିକ ମୁକ୍ତି ପାଇଗଲେ, ଓ ଆକାଶକୁ ଉଡ଼ିଗଲେ । ସେମାନଙ୍କର ସଂଖ୍ୟା ଏତେ ଥିଲା ଯେ ଉଡ଼ିଗଲା ବେଳେ ସୂର୍ଯ୍ୟ ମଧ୍ୟ ଆକାଶରେ ଅଦୃଶ୍ୟ ହୋଇଗଲେ । ମନେହେଲା ସତେ

ଯେପରି ରାତି ଆସିଗଲା । ସେମାନଙ୍କର ପକ୍ଷଗୁଞ୍ଜନା ଦ୍ୱାରା ମନେହେଲା ଯେପରି ପୃଥିବୀ ଉପରେ ଦେଇ ଏକ ଝଡ଼ ବହିଯାଉଛି, ଅନେକ ସମୟ ଧରି ଯୁବକଟି ପକ୍ଷୀ ଗୁଡ଼ିକୁ ଗୁହିଁ ରହିଲା। ତା'ପରେ ସେ ତା'ର ଖାଲି ଥଳୀକୁ ଧରି ନିଜ ବାଟରେ ଫେରିବାକୁ ଆରମ୍ଭ କଲା । ତାହାର ହୃଦୟ ଆନନ୍ଦରେ ଭରି ଉଠିଲା ଓ ତାର ତୁଣ୍ଡରୁ ଆପଣା ସ୍ୱୟଂ ଏକ ମନ ମତାଣିଆ ସଙ୍ଗୀତ ବାହାରି ପଡ଼ିଲା ।

କିନ୍ତୁ ପରେ ତାହାର ଉଦ୍ଦେଶ୍ୟ ବିଷୟ ମନେ ପଡ଼ିଯିବାରୁ ତାକୁ ଚିନ୍ତା ଓ ବେଦନା ଗ୍ରାସକଲା । ସେ ତା ମନକୁ ମନ କହିଲା—ଯେଉଁ ଧନ ମୋର ନୁହେଁ ତାକୁ ଦେଇ ଦେବାକୁ ମୋର ଅଧିକାର କାହୁଁ ଆସିଲା ? ମୁଁ ନିଜେ ଦରିଦ୍ରମାନଙ୍କ ପାଇଁ ବଗିଚା ତିଆରି କରିବାର .ପ୍ରସ୍ତାବ ଦେଇଥିଲି, ବର୍ତ୍ତମାନ ମୁଁ କ'ଣ କରିବି ?

ଏହାପରେ ଯୁବକଟି ହତାଶ ହୋଇ କାନ୍ଦିଲା ଓ କାନ୍ଦି କାନ୍ଦି ଗୋଟିଏ ଜାଗାରେ ଶୋଇ ପଡ଼ିଲା ।

ସେ ଶୋଇ ରହି ଏକ ସ୍ୱପ୍ନ ଦେଖିଲା—'ଉଜ୍ଜ୍ୱଳ ପର ଥିବା ଏକ ସୁନ୍ଦର ଶ୍ରେଷ୍ଠ ପକ୍ଷୀ ଆକାଶରୁ ତା ପାଖକୁ ଓହ୍ଲାଇ ଆସି ହଠାତ୍ ଏକ ସୁନ୍ଦର ଗୀତ ଗାଇଲା, ଶ୍ରେଷ୍ଠ ପକ୍ଷୀଟି ଗୀତ ଗାଇ ଗାଇ ଅଦୃଶ୍ୟ ହୋଇଗଲା । କ୍ରମେ ଯୁବକଟି ଆଖି ଖୋଲିଲା । ଓ ଯାହା ଦେଖିଲା ସେଥିରେ ସେ ଆଶ୍ଚର୍ଯ୍ୟ ହୋଇଗଲା ବିରାଟ ପ୍ରାନ୍ତରର ଯେତେଦୂର ପର୍ଯ୍ୟନ୍ତ ତାହାର ଆଖି ପାଇଲା ଦେଖିଲା ଅତି ସୁନ୍ଦର ସୁନ୍ଦର ପକ୍ଷୀମାନେ ପ୍ରାନ୍ତରରେ ସ୍ଥିର ହୋଇ ଯାଇଛନ୍ତି । ସେମାନେ ତାଙ୍କ ଡେଣାରେ ଭୂଇଁକୁ ସଫାକରି

ଅଞ୍ଚଳରେ ଗ୍ଭେଟ ଗ୍ଭେଟ ଗାଛକରି ସେଥିରେ ଧଳା ଧଳା ମଞ୍ଜି ପୋତୁଛନ୍ତି ।

ଯୁବକଟି କିଛି ସମୟ ପର୍ଯ୍ୟନ୍ତ ସେମାନଙ୍କୁ ଗ୍ଭହିଁଲି ଏବଂ ସବୁ ପକ୍ଷୀ ଗୁଡ଼ିକ ଏକାବେଳେ ଆକାଶକୁ ଉଡ଼ିଗଲେ । ପୁଣି ଥରେ ମନେ ହେଲି ସୂର୍ଯ୍ୟ ଯେପରି ଅସ୍ତ ହୋଇଗଲେ, ଏହାପରେ ଆଉ ଏକ ସୁନ୍ଦର ଘଟଣା ଘଟିଲି । ପକ୍ଷୀମାନେ ଖୋଳିଥିବା ଗାଡରୁ ଗଛ ଗୁଡ଼ିକ ଗଜା ହୋଇ ବଢ଼ି ଉଠିଲି । କେତୋଟି ମୂହୂର୍ତ୍ତ ମଧ୍ୟରେ ଗଛମାନଙ୍କରେ ସବୁଜ ପତ୍ର ଦେଖା ଦେଲି ଓ ପ୍ରଚୁର ଫୁଲ ଫୁଟି ବାୟୁ ମଣ୍ଡଳକୁ ମହକାଇ ଦେଲି । ଗ୍ଭହୁଁ ଗ୍ଭହୁଁ ଫୁଲ ଗୁଡ଼ିକରୁ ପାଖୁଡ଼ା ଝଡ଼ିଗଲି ଓ ପ୍ରତ୍ୟେକ ଡାଳରେ ସୁନେଲି ଆପେଲ ଗୁଡ଼ିକ ଦୀପ୍ତିମାନ୍ ହୋଇ ଉଠିଲା । ସବୁଜ ଘାସ ପଡ଼ିଆ ଉପରେ ପାଖୁଡ଼ାମାନ ପଡ଼ି, ଦେଖାଗଲି ଯେପରି ଏକ ସୁନ୍ଦର ଗାଲିଗ୍ଭ ବିଛା ହୋଇଛି । ପକ୍ଷୀମାନେ କିଚିରି ମିଚିରି ଶବ୍ଦ କରି ବାତାବରଣକୁ ମହକାଇ ଦେଉଥାନ୍ତି । ସେହି ଗ୍ଭସ୍ତା ପାଖ ଦେଇ ଏକ ସୁନ୍ଦର ନାଳ ତିଆରି ହୋଇଗଲା । ଯୁବକ ଅତି ଉତ୍ସାହରେ ଗ୍ଭରି ଆଡ଼କୁ ଗ୍ଭହିଁଲା । ସେ ନିଜ ଆଖିକୁ ବିଶ୍ୱାସ କଲି ନାହିଁ । ସେ ଖୁବ୍ ଜୋରରେ ପାଟିକଲି କାରଣ ସେ ଜାଣି-ବାକୁ ଗ୍ଭହୁଁଥିଲି ସେ ଯାହା ଦେଖୁଛି ତାହା ସ୍ୱପ୍ନ ନା ସତ୍ୟ ? ସେ ଜାଣିଲି ଏହା ସତ୍ୟ । ସେ ଧଡ଼ପଡ଼ ହୋଇ ଉଠି ସାଧୁଙ୍କୁ ତଥା ଅନ୍ୟ ଲୋକମାନଙ୍କୁ ଏହା ଜଣାଇବା ପାଇଁ ଦୌଡ଼ିଲା ।

ଯୁବକ ପହଞ୍ଚି ହାସିମ୍, କାଶିମ ଓ ସାଧୁ ମହାଗ୍ଭଜଙ୍କୁ ସମସ୍ତ କଥା କହିଲା । ସାଧୁ କହିଲେ ତୁମେ ପକ୍ଷୀମାନଙ୍କୁ ସୁନା ମୋହର ଦେଇ ମୁକ୍ତ କରି ଦେଇଥିବା ହେତୁ ପକ୍ଷୀଗ୍ଭଜ ଏପରି ଭାବେ ତୁମ କାର୍ଯ୍ୟର ପୁରସ୍କାର ସ୍ୱରୂପ ଏହା କରିଛନ୍ତି; ହାସିମ୍

ଓ କାଶିମ ଏହା ଶୁଣି ଖୁବ୍ ଆନନ୍ଦିତ ହେଲେ । ସୁନା ମୋହରର ସଠିକ ମୂଲ୍ୟ ମିଳିଲା ବୋଲି ସେମାନେ ଭାବିଲେ, ଏହାପରେ ଦଳ ଦଳ ହୋଇ ଲୋକେ ସେ ବିଚିତ୍ର ବଗିଚା ଦେଖିବାକୁ ଆସିଲେ ।

ସେମାନେ ଯେଉଁଠାରେ ଗଛ ଛାଇରେ ବସି ମିଠା ମିଠା ଆପେଲ ଖାଇଲେ, ନାଳର ମଧୁର ପାଣି ପିଇଲେ, ବିଚିତ୍ର ବଗିଚା ଦେଖି ସମସ୍ତେ ଆନନ୍ଦିତ ହେଲେ ।



# ପିତାର ଐତିହ୍ୟ

ଗୋଟିଏ ଗ୍ରାମରେ ଜଣେ ବୁଢ଼ା ଥିଲା । ତା'ର ତିନିପୁଅ । ସେମାନେ ସମସ୍ତେ ବଡ଼ ହୋଇ ସାରିଥିଲେ । ତାଙ୍କର ତିନି ପୁଅ ଝିଅ ସେମାନେ ମଧ୍ୟ ସମସ୍ତେ ବିବାହ କରି ସାରିଲେଣି । ବୁଢ଼ାଙ୍କ ପୁଅମାନେ ଭିନ୍ନ ଭିନ୍ନ ଜାଗାରେ ଚାକିରି କରୁଥାନ୍ତି । ବୁଢ଼ାଙ୍କର ଗୋଟିଏ ଫାର୍ମ ଥିଲା । ସେ ଥିଲେ ଜଣେ ବିଶିଷ୍ଟ କୃଷକ ବୃଦ୍ଧ ଓ ଅକର୍ମଣ୍ୟ ହୋଇ ଯାଆନ୍ତେ ବଡ଼ ପୁଅ ପାଖରେ ରହୁଥିଲେ । ବଡ଼ପୁଅ ଫାର୍ମର ଦେଖା ଶୁଣା କରୁଥିଲା । କିଛି କାଳପରେ ବଡ଼ପୁଅ ଖୁବ୍ ଅତିଷ୍ଠ ବୋଧକଲା, କାରଣ; ବାପା ସବୁଦା ତା କାମରେ ବାଧା ଦେଉଥିଲେ, ସେ ଇଚ୍ଛାକଲା । ବାପା ଯାଇ କିଛି କାଳ ଅନ୍ୟ ପୁଅମାନଙ୍କ ପାଖରେ ରହନ୍ତୁ । ଏଣୁ ବୁଢ଼ାକୁ ବଡ଼ ପୁଅ କହିଲା—ଆପଣଙ୍କୁ ସେ ପରି ଦେଖି ନାହାନ୍ତି । କିଛି

ସନ୍ଦେହ ନ କରି ବାପା ଦ୍ୱିତୀୟ ପୁଅ ପାଖରେ ପହଞ୍ଚିଲେ । କିଛି କାଳପରେ ବୋହୂ ବିରକ୍ତି ପ୍ରକାଶ ଆରମ୍ଭ କଲା । ଏଣୁ ସେଠାରେ ବର୍ଷଟାଏ ନ ପୂରୁଣୁ ସାନପୁଅ ପାଖରେ ଯାଇ ରହିବାକୁ ପୁଅ ବୋହୂ ପ୍ରସ୍ତାବ ଦେଲେ ।

ବାପ ଚାଲିଲେ ସାନପୁଅ ଘରକୁ । ମାସଟିଏ ରହିଛନ୍ତି କି ନାହିଁ ବୁଢ଼ା ଜାଣିଲେ ଯେ ସାନବୋହୂ ତାଙ୍କ ଉପରେ ଖୁବ୍ ବିରକ୍ତ; କେତେବେଳେ ବୋହୂ ତୁନି ରହେ ନାହିଁ ସବୁବେଳେ ତାଙ୍କୁ ଗାଳିଗୁଲଜ କରେ ।

ଯେଉଁ ବଡ଼ ପୁଅକୁ ଜମିବାଡ଼ି ଘର ଦେଇଛନ୍ତି ତାଙ୍କ ପାଖରେ କାହିଁକି ରହୁ ନାହାନ୍ତି । ଚିତ୍କାର କରି କହେ ସାନ ବୋହୂ । ଏଣୁ ବୁଢ଼ା ଅପମାନ ବୋଧ କରି ଝିଅମାନଙ୍କ ଘରେ ରହିବାକୁ ଗଲେ ।

ଗୋଟିଏ ଝିଅ ଘରେ କେତେକ ସପ୍ତାହ ବିତାଇ ତାପରେ ଅନ୍ୟ ଝିଅ ଘରେ ରହିଲେ—ପୁନଶ୍ଚ ସେ ଅନୁଭବ କଲେ ଯେ ସେ ଏକ ବୋଝ—ତାଙ୍କୁ ଏଠାରୁ ମଧ୍ୟ ଯିବାକୁ ପଡ଼ିବ । ଏମିତି ବାପା ଗୋଟିଏ ପରେ ଗୋଟିଏ ପିଲା ପାଖରେ ପହଞ୍ଚିଲା, ସେତେବେଳକୁ ତାଙ୍କର ପୁରୁଣା କୋଟଟା ଚିରି ଗଲାଣି, କେହି ଆଉ ନୂଆ କୋଟଟାଏ ତାଙ୍କୁ କିଣି ଦେଲେ ନାହିଁ, ଲୋକଙ୍କ ଆଗକୁ ଯିବା ଲାଗି ତାଙ୍କୁ ସରମ ଲାଗିଲା ।

ଦିନେ ବୁଢ଼ାଙ୍କୁ ତାଙ୍କର ଜଣେ ପୁରୁଣା ବନ୍ଧୁ ଦେଖି କହିଲେ, "କହୋ ସାଙ୍ଗ ତମେ ଇମିତି ଅପନା କାହିଁକି ହୋଇଛ ? ତମେତ ବେଶ୍ ସ୍ୱଚ୍ଛଳ ଥିବା କଥା ମୁଁ ଜାଣେ । ବୁଢ଼ା ତାଙ୍କର ସମସ୍ତ କାହାଣୀକୁ ବନ୍ଧୁଙ୍କୁ କହିଲେ । ଚଞ୍ଚଳ ତାଙ୍କର ସମସ୍ତ

ସମ୍ପତ୍ତି ଓ ଗୃହଜମି ଦେଇଦେବା ତାଙ୍କର ଭୁଲ ହୋଇଛି । ସେ ବର୍ତ୍ତମାନ ଭିକାରି ହୋଇ ଏହା ଦ୍ୱାର ତାହା ଦ୍ୱାର ବୁଲୁଛି । ତାଙ୍କର ପ୍ରିୟ ପୁଅ ଝିଅମାନେ ତାଙ୍କୁ ଯେପରି ଚହ୍ନି ପାରୁ-ନାହାନ୍ତି । ବାପ ଅପେକ୍ଷା ସେମାନେ କୁକୁରକୁ ଭଲ ଖୁଆନ୍ତି । ପୁରୁଣା ବନ୍ଧୁ ତାଙ୍କ କଥା ଶୁଣି କହିଲେ –

"କିଛି ଦୁଃଖକର ନାହିଁ ମୁଁ ସାହାଯ୍ୟ କରିବି ଟିକିଏ ଚଞ୍ଚଳ ହୁଅ ଦେଖିବା ଖୁସିରେ ରହିବ । ମୁଁ ଯାହା କହୁଛି ଶୁଣ, ମୋର ଭଣ୍ଡାର ଘରେ ଗୋଟାଏ ସିନ୍ଦୁକ ଅଛି । ମୁଁ ତାକୁ ଦେଇ ଦେବି । ଗୋଟିଏ ପୁରୁଣା ସିନ୍ଦୁକ ନେଇ ମୁଁ କଣ କରିବି ? କଣ ଗୋଟାଏ ପରିହାସର ପାତ୍ର ହେବି ?

ଟିକିଏ ଅପେକ୍ଷା କର ମୋ କଥା ଶୁଣ ତୁମର ଝିଅ ଯେତିକି ଚାବି ସେତିକି ତିଆରି କର । କୌଣସି ଝିଅ ପାଖକୁ ଆସିଲେ ତୁମେ ଗୋଟାଏ ଚାବି ଧରି ଖେଳ ।

ଏଇଟି କଣ ବୋଲି ସେ ଯେବେ ପଚାରିବେ ତୁମେ କହିବ ତୁମପାଇଁ ସମ୍ପଦ ନିରାପଦ ସ୍ଥାନରେ ଲୁକ୍କାୟିତ ଅବସ୍ଥାରେ ଅଛି । ମୁଁ ମଲେ ଏ ସମ୍ପଦ ତୁମର ସବୁ ହେବ ।

ବନ୍ଧୁଙ୍କ ପରାମର୍ଶ ବୁଢ଼ା ନୀରବ ଅବସ୍ଥାରେ ଶୁଣୁଥିଲେ । ପୁରୁଣା ସିନ୍ଦୁକକୁ ସେ ନେଇ ଗଲେ ଏବଂ ତା ପାଇଁ ଚାବିକାଠି ତିଆରି କଲେ । ତାହାପରେ ସେ ବଡ଼ ପୁଅ ଘରେ ଠିକଣା ସମୟରେ ପହଞ୍ଚି ତାଙ୍କ କମରର ବୋତାମରେ ଲଟକା ଚାବିଟି ହଲାଇଲେ । ପୁଅ ଚାବିଟି ଦେଖି ତା ସମ୍ପର୍କରେ ଜାଣିବାକୁ ଚାହିଁଲା ।

ଏ ମୋର ସମ୍ପଦ ଭଣ୍ଡାରର ଚାବିକାଠି । ମୁଁ ମଲେ ଏ ସବୁ ତୁମର । ଯଦି ଚାହୁଁ ମୁଁ ତଟେ ସଙ୍ଗେ ସଙ୍ଗେ ଚାବିକାଠି ଦେବି ଏବଂ ମୋର ଶେଷ ସମୟରେ କେଉଁଠି ସିନ୍ଦୁକଟି ଅଛି କହିଦେବି । ଏ କଥା ଶୁଣି ପୁଅ ବୋହୂ ଭାରି ଖୁସି ହେଲେ । ବୁଢ଼ା ବୁଲିବାକୁ ବାହାରନ୍ତେ ପୁଅ ତାଙ୍କୁ ନୂଆ ପ୍ୟାଣ୍ଟ, ଜାମା, କୋଟ ଦେଇ କହିଲା ଆପଣ ଚାଲିକରି ଯିବାର ନୁହେଁ । ଘୋଡ଼ାଗାଡ଼ି ସଜାଇ କରିବାକୁ ମୁଁ କହୁଛି । ଯେମିତି ଗୋଟାଏ ଗୁରୁତର କାମରେ ଯିବାପାଇଁ ବାପାଙ୍କୁ ଘୋଡ଼ା ଗାଡ଼ିରେ ଚଢ଼ାଇ ବିଦାକରି ଦେଲା । ସାନ ଭାଇ ଭଉଣୀମାନେ ଏହା ଦେଖି ଭାବିଲେ—ବାପା ଯେମିତି ଦେଖାଇ ହୁଅନ୍ତି ସେତେ ଦରିଦ୍ର ନୁହଁନ୍ତି । ତାହା ନ ହୋଇଥିଲେ ଆମ ବଡ଼ଭାଇ ତାଙ୍କୁ ଏମିତି ସମ୍ମାନ କାହିଁ ଦିଅନ୍ତା ? ଏଣିକି ତାଙ୍କ ନିଜ ଘରକୁ ଆସିବା ଲାଗି ବୁଢ଼ାଙ୍କୁ ସମସ୍ତ ପିଲାମାନେ ନିମନ୍ତ୍ରଣ କଲେ ? ବୁଢ଼ା ଯାହା ଚାହୁଁଥିଲେ ତାହାର ତିନ ଡବଲ ପାଉଥିଲେ । ସାନପୁଅ ଦରଜୀକୁ ଡାକି ବାପାଙ୍କ ପାଇଁ ସୂକ୍ଷ୍ମ ପଶମରେ ପୋଷାକ ତିଆରି କରିଦେଲା । ଆଉ ପୁଅ ମୋଚୀ ନିକଟକୁ ଯାଇ ହଳେ ଚମତ୍କାର ଚମଡ଼ାର ବୁଟ ଯୋତା କିଣି ଆଣିଲା । ବଡ଼ ପୁଅ ଗୋଟାଏ ଭଲ ଲୋମର ଓଭରକୋଟ ଆଣିଦେଲା । ବୁଢ଼ା ଚାଷୀର ଶେଷ ଜୀବନ ମଉଜବରେ କଟିଗଲା ।

କିଛିକାଳ ପରେ ବୁଢ଼ା ଶଯ୍ୟାଶାୟୀ ହେଲା । ମୃତ୍ୟୁ ଆସନ୍ନ ଜାଣି ପିଲାମାନଙ୍କୁ ଡାକି ବୁଢ଼ା କହିଲେ—ସିନ୍ଦୁକଟି ଜଙ୍ଗଲର ବଗିଚାଳପୁ ମାର୍ଗିତରେ ଅଛି । ପ୍ରତ୍ୟେକଙ୍କ ନିକଟରେ ଚାବିକାଠି ଅଛି । ଜ୍ଞାତି କୁଟୁମ୍ବ ପଡ଼ୋଶୀଙ୍କ ଆଗରେ ଦେଖାଇବା ଲାଗି ପିଲାଏ ବାପାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ମହା ସମାରୋହରେ ପାଳନ-

କଲେ । ପରଦିନ ସକାଳେ ସେମାନେ ଜିଲ୍ଲା କୋର୍ଟରେ ଲେଖା ଓ ମୂର୍ତ୍ତି ତରବାରିସହ ଗାଆଁ ପୋଲିସକୁ ଧରି ସେଠାରେ ଉପସ୍ଥିତ ହେଲେ । ସମ୍ପଦକୁ ନିଜ ନିଜ ମଧ୍ୟରେ ସମାନ କରି ବାଣ୍ଟି ନେବା ଉଦ୍ଦେଶ୍ୟରେ; କିନ୍ତୁ କଣ ଦେଖିବେ କିଛି ନାହିଁ ସିନ୍ଦୁକଟି ଫାଙ୍କା, ଖଣ୍ଡେ ଭିକାରିର ବାଡ଼ି ଓ ଖଣ୍ଡେ ଲେଖା ତା ମଧ୍ୟରେ ଅଛି ।

ସେଥିରେ ଲେଖାଅଛି—"ବୁଢ଼ାକୁ ଏହି ବାଡ଼ିରେ ପିଟିବ କାରଣ ସେ ତାର ପିଲାମାନଙ୍କୁ ସର୍ବଶ୍ରେଷ୍ଠ ଓ ସମ୍ମାନପ୍ରଦ ମଣିଷ କରି ଗଢ଼ି ପାରି ନାହିଁ" ।



## ରାମଙ୍କ ଇଚ୍ଛା

କୌଣସି ଏକ ଗ୍ରାମରେ ଜଣେ ବୁଣାକାର ବାସ କରୁଥିଲା । ସେ ଅତ୍ୟନ୍ତ ଧର୍ମ ପରାୟଣ ଥିଲା । ସଦା ସର୍ବଦା ଭଗବତ ନାମ ନେଇ ସେ ସୁଖରେ ରହୁଥିଲେ । ସମସ୍ତେ ତା ପ୍ରତି ସହାନୁଭୂତିଶୀଳ ଥିଲେ ଓ ତାକୁ ସୁଖ ପାଉଥିଲେ । ସେ ଲୁଗାବୁଣି ନିକଟସ୍ଥ ହାଟରେ ବିକ୍ରି କରୁଥିଲା । ଗରାଖ ତାକୁ ଲୁଗାର ଦର ପଚାରିଲେ ସେ କହୁଥିଲା "ରାମଙ୍କ ଇଚ୍ଛାରେ ଲୁଗା ଗଜକୁ ଟଙ୍କାଟିଏ ଆଉ ମଜୁରି, ଆଠଅଣା ଲାଭ ରାମଙ୍କ ଇଚ୍ଛାରେ ଦୁଇଅଣା, ଏଣୁ ସବୁ ମିଶି ରାମଙ୍କ ଇଚ୍ଛାରେ ଲୁଗାଟିର ଦାମ୍ ଟଙ୍କାଏ ଦଶଅଣା ।

ତନ୍ତୀଠାରେ ଲୋକମାନଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ତେଣୁ ସେମାନେ ତନ୍ତୀ କହୁଥିଲା ଦାମ୍ ଦେଇ ଲୁଗା କିଣି ନେଉଥିଲେ ।

ତନ୍ତୀ ଥିଲା ଭଗବାନଙ୍କର ଜଣେ ସଚ୍ଚା ଭକ୍ତ । ସନ୍ଧ୍ୟା ସମୟରେ ସେ ପୂଜା, ପାଠ ତଥା ମହାପୁରାଣ ଶାସ୍ତ୍ରାଦି ପାଠକରି ଲୀଳାମୟଙ୍କର ଗୁଣ କୀର୍ତ୍ତନ କରୁଥିଲା । ଏଣୁ ଏହିପରି ଉପାୟରେ ସେ ସନ୍ଧ୍ୟା ସମୟରେ ଘଣ୍ଟା ଘଣ୍ଟା କଟାଇ ଦେଉଥିଲା ।

ଏକଦା ସେ ବହୁତ ରାତି ପର୍ଯ୍ୟନ୍ତ ଶୋଇ ପାରିଲା ନାହିଁ । ପୂଜାଘରେ ବସିରହି ଥିବା ସମୟରେ ଦଳେ ଡକାୟତ ସେହି ବାଟ ଦେଇ ଗଲେ । ସେମାନେ ଡକାୟତି ଆଣିଥିବା ଜିନିଷପତ୍ର ବୋହି ନେବା ନିମନ୍ତେ ଗୋଟିଏ ଲୋକ ଦରକାର ଥିଲା । ସେମାନେ ତନ୍ତୀକୁ ଦେଖି କହିଲେ ଆମ ସହ ଚାଲ । ଏହା କହି ସେମାନେ ତାର ହାତ ଧରି ଘୋଷାରି ନେଲେ ।

ଏହାପରେ ସେମାନେ ଗୋଟାଏ ଘରେ ପୁଣି ସିନ୍ଧିକରି ଚୋରି କଲେ ଓ ତାପରେ ସେହି ଜିନିଷ ସମାନ ଗୋଟାଏ ବୋଝ କରି ତନ୍ତୀ ମୁଣ୍ଡରେ ଲଦି ଦେଲେ । ତାକୁ ନେଇ ଚାଲିବାକୁ ହୁକୁମ ଦେଲେ । କିନ୍ତୁ ହଠାତ୍ ପ୍ରହରୀମାନେ ରାତିରେ ଜଗିଥିବା ସମୟରେ ଦେଖି ଆସି ସେ ସ୍ଥାନରେ ପହଞ୍ଚିଗଲେ । ତେଣୁ ଡକାୟତମାନେ ଦାଣ୍ଡି ଆମାରି ମାଲ ନେ ବୋହିଥିବା ତନ୍ତୀକୁ ଛାଡ଼ି ପଳାଇଗଲେ । ବୋଝ ମୁଣ୍ଡାଇ ନେଉଥିବା ତନ୍ତୀକୁ ସେମାନେ ବନ୍ଦୀକରି ରାଜାଙ୍କ ଦରବାରକୁ ନେଇଗଲେ । ରାଜା କହିଲେ ଏହାକୁ ଆଜି ରାତିକ ବନ୍ଦୀଶାଳାରେ ରଖ କାଲି ତା'ର ବିଚାର କରିବା ।

ତାପରଦିନ ରାଜାଙ୍କ ଦରବାରରେ ତନ୍ତୀକୁ ବିଚାର ପାଇଁ ହାଜର କରାଗଲା । ଗାଁର ଲୋକେ ଏହା ଜାଣିପାରି ଆସି ଦରବାରରେ ଭିଡ଼ କଲେ । ସେମାନେ ତନ୍ତୀର ସପକ୍ଷରେ ଧ୍ୱନି ଦେଇ କହୁଥିଲେ ତନ୍ତୀ କେବେ ଚୋରି କରି ନପାରେ । ସେ ଅକାଳରେ ପଡ଼ିଯାଇଛି ।

ଏହାପରେ ରାଜା କହିଲେ ଚନ୍ତୀ ତୁମେ ତୁମର କଣ କହିବାର ଅଛି କୁହ । ଚନ୍ତୀ କହିଲା—ମହାଶୟ ହଜୁର ମୁଁ ରାତିରେ ରାମଙ୍କ ଇଚ୍ଛାରେ ଖାଇବା ଶେଷ କଲି । ରାମଙ୍କ ଇଚ୍ଛାରେ ପୂଜାଘରେ ବସିଥିଲି । ରାମଙ୍କ ଇଚ୍ଛାରେ ବହୁତ ରାତି ହୋଇଯାଇ ଥିଲା । ରାମଙ୍କ ଇଚ୍ଛାରେ ମୁଁ ଈଶ୍ୱରଙ୍କ କଥା ଭାବି ତାଙ୍କର ମହିମା କୀର୍ତ୍ତନ କରୁଥିଲି । ସେହି ସମୟରେ ରାମଙ୍କ ଇଚ୍ଛାରେ ଦଳେ ଡକାୟତ ସେହି ବାଟରେ ଗଲେ ।

ମୋତେ ଠାକୁର ଘରୁ ଡାକି ରାମଙ୍କ ଇଚ୍ଛାରେ ସେମାନେ ବୋଝ ମୁଣ୍ଡାଇ ନେବା ପାଇଁ ଧୋବାରି ନେଇ ସଙ୍ଗରେ ଚାଲିବାକୁ ଆଦେଶ ଦେଲେ । ରାମଙ୍କ ଇଚ୍ଛାରେ ସେମାନେ ଗୋଟାଏ ଘରେ ଡକାୟତି କଲେ ଓ ଡକାୟତି କରିଥିବା ମାଲପତ୍ର ଗୁଡ଼ିକ ରାମଙ୍କ ଇଚ୍ଛାରେ ମୋ ଉପରେ ଲଦି ଦେଲେ ।

ଠିକ୍ ସେତିକବେଳେ ରାମଙ୍କ ଇଚ୍ଛାରେ ପ୍ରହରୀମାନେ ଆସି ପହଞ୍ଚିଗଲେ । ଆଉ ସେମାନେ ମୋତେ ଚୋର ବୋଲି ଭାବି ରାମଙ୍କ ଇଚ୍ଛାରେ ବାନ୍ଧି ବନ୍ଦୀକରି ଆଣିଲେ । କାଲି ରାତିସାରା ରାମଙ୍କ ଇଚ୍ଛାରେ ମୋତେ ଗୋଟାଏ ଘରେ ତାଲାବନ୍ଦ କରି ଅଟକାଇ ରଖିଥିଲେ । ରାମଙ୍କ ଇଚ୍ଛାରେ ଆଜି ମୋତେ ଆପଣଙ୍କ ଦରବାରକୁ ଅଣାଯାଇଛି ।

ଏହାଶୁଣି ରାଜା ବୁଝିଲେ ଚନ୍ତୀଟା ବଡ଼ ନିରୀହ ଓ ଧାର୍ମିକ । ତେଣୁ ସେ ତାକୁ ଖଲାସ କରି ଦେବା ପାଇଁ ନିର୍ଦ୍ଦେଶ ଦେଲେ । ଫେରିବା ବାଟରେ ଚନ୍ତୀ ଜଣକ ତାର ସାଙ୍ଗ ଲୋକମାନଙ୍କୁ କହିଲା ରାମଙ୍କ ଇଚ୍ଛାରୁ ମୁଁ ମୁକ୍ତି ପାଇଗଲି ।



# ସ୍ୱର୍ଗର ରାଜାଙ୍କ କକା ମଣ୍ଡୁକ

ଅନେକ ଦିନ ତଳର କଥା, ପୃଥିବୀରେ ଭୀଷଣ ଦୁର୍ଭିକ୍ଷ ପଡ଼ିଲା । ଏପରି ଦୁର୍ଭିକ୍ଷ ପୂର୍ବେ କେବେ ପଡ଼ି ନ ଥିଲା । କିମ୍ବା ତାପରେ ମଧ୍ୟ କେବେ ପଡ଼ି ନାହିଁ ।

ଏହି ଦୁର୍ଭିକ୍ଷର ପ୍ରଥମ ସୂଚନା ପାଇଲା ବୁଦ୍ଧିମାନ ମଣ୍ଡୂକ । ସେ ଦେଖିଲା ଦିନକୁ ଦିନ ସେ ରହିଥିବା ପୋଖରୀଟା ଶୁଖି ଯାଉଛି । ସେ ମନେ ମନେ ଭାବିଲା ଏପରି ଭାବେ ମରିବା ଅପେକ୍ଷା ବରଂ କିଛିଟା ପ୍ରତିକାର ଚେଷ୍ଟା କଲେ କ୍ଷତି ଅବା କଣ ? ସେ ତେଣୁ ସ୍ଥିରକଲା ସ୍ୱର୍ଗକୁ ଯିବ ଓ ସ୍ୱର୍ଗର ରାଜାଙ୍କୁ ପୃଥିବୀର ଦୁର୍ଭିକ୍ଷ ଦେଖା ଦେଇଥିବା କଥା ଜଣାଇ ସାହାଯ୍ୟ ପାଇଁ ନିବେଦନ କରିବ ।

ଏହା ସ୍ଥିର କରି ବେଙ୍ଗ ଏକା ଏକା ବାହାରି ପଡ଼ିଲା ସ୍ୱର୍ଗ ଆଡ଼କୁ । ବାଟରେ ସେ ଦେଖିଲା ଦଳେ ମହୁମାଛି ଉଡ଼ି ଆସୁଛନ୍ତି, ସେମାନଙ୍କୁ ସେ ବୁଝାଇଲା ଏମିତି ଶୁଖି ଶୁଖି ମରିବା ଅପେକ୍ଷା କିଛି ନା କିଛି ଉଦ୍ୟମ କରିବା ଉଚିତ୍ । ମହୁମାଛିମାନେ କହିଲେ ଆମେ ତ ଫୁଲରୁ ମହୁ ସଂଗ୍ରହ କରୁ, ଦୁର୍ଭିକ୍ଷ ଯୋଗୁ ଯଦି ଫୁଲ ନ ମିଳେ ତେବେ ଆମେ ମହୁ ପାଇବୁ କେଉଁଠୁ ?

—ତାହାହେଲେ ତୁମେମାନେ ମୋ ସହ ସ୍ୱର୍ଗକୁ ଚାଲୁ ନାହଁ କାହିଁକି ? ହଁ ଆମେ ମଧ୍ୟ ତୁମ ସହ ଯିବୁ । ସେମାନେ ଆଗେଇ ଚାଲିଲେ । ଦେଖିଲେ ବାଟରେ ଗୋଟିଏ କୁକୁଡ଼ା ବସିଛି ଦୁର୍ଭିକ୍ଷ ଯୋଗୁ ତା ଚିତ୍ତବାସ ବନ୍ଦ । ପୋକଯୋକ ମିଳୁ

ନଥାନ୍ତି । ତେଣୁ ସେ ଖାଇବ କଣ ? ତେଣୁ କୁକୁଡ଼ା ମଧ୍ୟ ବେଙ୍ଗ ଓ ମହୁମାଛି ଦଳ ସହ ସ୍ୱର୍ଗକୁ ଯିବାକୁ ସ୍ଥିର କଲା, ସେମାନେ ସମସ୍ତେ ଯିବାକୁ ବସିଛନ୍ତି । ଏହି ସମୟରେ ଆସିଲା ସିଂହ । ସେ ରାଗରେ ଗରଗର ହେଉଥାଏ । କାରଣ ସେ କିଛିଦିନ ହେଲା କୌଣସି ଶିକାର ପାଇନଥିଲା । ଦୁର୍ଭିକ୍ଷ ଯୋଗୁ କୌଣସି ଜୀବ-ଜନ୍ତୁ ମିଳୁ ନ ଥାନ୍ତି । ସିଂହ ଏମାନଙ୍କର ହାଲ୍‌ଚାଲ୍ ସବୁ ଠିକଣାଟି ଶୁଣିଲା ଓ ନିଜର ସାଲିସ ଜଣାଇଲା—ମୁଁ ମଧ୍ୟ ତୁମମାନଙ୍କ ସହ ସ୍ୱର୍ଗ ପୁରୀକୁ ଯିବ । ସମସ୍ତେ ସିଂହକୁ ପାଇ ଖୁସି ହେଲେ । ଦେଖିବାକୁ ବଳୁଆ ତେଣୁ ତାକୁ ସଙ୍ଗରେ ନେଲେ ସେ ବହୁତ ସାହାଯ୍ୟ କରିବ ।

ଅନେକ ଦିନ ଯାତ୍ରା କରିବା ପରେ ସେମାନେ ସ୍ୱର୍ଗ ରାଜ୍ୟରେ ପହଞ୍ଚିଗଲେ । ରାଜନଅର ଫାଟକ ପାଖରେ ବେଙ୍ଗ କହିଲା—ତୁମ୍ଭେମାନେ ସମସ୍ତେ ଏଠାରେ ଅପେକ୍ଷା କର । ମୁଁ ଭିତରକୁ ଯାଏଁ । ରାଜା କେଉଁଠି ଅଛନ୍ତି ଦେଖିବା ପରେ ମୁଁ ଆସି ତୁମ୍ଭମାନଙ୍କୁ ଡାକି ନେବି ।

ଏହାପରେ ବେଙ୍ଗ ଡେଇଁ ଡେଇଁ ପଶିଲା ମହଲ ଭିତରକୁ, ମହଲ ଭିତରେ କେହି ନଥିଲେ । ବଡ଼ ବଡ଼ କୋଠରୀ ଶୂନ୍‌ସାନ । ବେଙ୍ଗ ଅନେକ କୋଠରୀ ପାରିହେବା ପରେ ହଠାତ୍ ଶୁଣିଲା— ହସର ଆୱାଜ । ସେ ଦେଖିଲା ଯେ ମହାରାଜା ଗୋଟିଏ କୋଠରୀରେ ଦୁଗ୍ଧ ଫେନନିଭ ନରମ ଶଯ୍ୟା ଉପରେ ଶୋଇଛନ୍ତି । ତାଙ୍କ ଚାରି କଡ଼ରେ ବସି ଯୌବନୋଦ୍ଦୀପ୍ତ ସ୍ଥୂଳ ଉରଜା ଗୋରୀ ତନ୍ୱୀ ପରୀମାନେ ବସିଛନ୍ତି । ମହାରାଜ ସେମାନଙ୍କୁ ଆଲିଙ୍ଗନ କରୁଥାନ୍ତି ଓ ସେମାନଙ୍କ ସହ ରତି କ୍ରୀଡ଼ା ମଧ୍ୟ କରୁଥାନ୍ତି । ସେମାନେ ସମସ୍ତେ ବିବସ୍ତ୍ରା ହୋଇଥିଲେ ।

ସେମାନଙ୍କର ଶରୀରର ଗୁପ୍ତାଙ୍ଗ ଗୁଡ଼ିକ ଦେଖା ଯାଉଥିଲା । କୋଠରୀଟା ସାରା ମନୋମୁଗ୍ଧକାରୀ ଅତରରେ ମହମହ ବାସୁଥାଏ ଓ ଗୃହଅଗଣେ ନାନା ପ୍ରକାର ସୁଗନ୍ଧ ପୁଷ୍ପରାଜ ପଡ଼ିଥାଏ । ଏହା ଦେଖି ବେଙ୍ଗ ଭାବିଗଲା—ତେଣେ ଦୁର୍ଭିକ୍ଷ ପଡ଼ିଛି । ଅଥଚ ଏଠି ଏମାନେ ମଉଜ କରୁଛନ୍ତି । ଏହା ଦେଖି ବେଙ୍ଗଟା ଏକା ଡେଙ୍ଗରେ ସେମାନଙ୍କ ମଝିରେ ବସିଗଲା ।

ସ୍ୱର୍ଗର ରାଜା ଏହା ଦେଖି ଭାରି ରାଗିଗଲେ । ସାମାନ୍ୟ ମଣ୍ଡୁକଟାଏ ଅଥଚ ସ୍ୱର୍ଗର ମହାରାଜାଙ୍କ ଗହଣରେ ପୁଣି ରତିକ୍ରୀଡ଼ା କାଳରେ ଆସି ବସିପଡ଼ିଛି । ସେ ରାଗ ତମ ତମ ହୋଇ କହିଲେ, ହଇରେ ଓଲୁ ମଣ୍ଡୁକ ! ତୁ ସାମାନ୍ୟ ଜୀବଟାଏ ହୋଇ ଏଠାକୁ ଆସିବାକୁ ସାହସ କଲୁ କିପରି ?

ବେଙ୍ଗ ତ ଦୁର୍ଭିକ୍ଷରେ ପଡ଼ି ଜୀବନର ଆଶା ଛାଡ଼ି ଦେଇଥିଲା । ଏଣୁ ସେ ନିର୍ଭୀକ ହୋଇ କହିଲା—ହେ ମହାରାଜ ! ଏହା କହୁକହୁ ଆଉ କଣ କହିବ ଭାବି କହି ପାରିଲା ନାହିଁ । ମହାରାଜା ତାଙ୍କର ଶରୀର ରକ୍ଷୀମାନଙ୍କୁ ଡ଼ାକି କହିଲେ, ଏ ସ୍ଥାନ ବେଙ୍ଗଟାକୁ ନେଇ ଫିଙ୍ଗି ଦିଅ । ବେଙ୍ଗ ଧରିବାପାଇଁ ରକ୍ଷୀମାନେ ଘେରିଗଲେ, କିନ୍ତୁ ବେଙ୍ଗ ଧରା ପଡ଼ୁ ନଥାଏ । ଏପଟ ସେପଟ ଡେଇଁ ଖସି ଯାଉଥାଏ । ଡେଇଁବା ତ ତାର କାମ । ଏଣୁ ସେ ଏହି କାମଟା ଭଲ ଭାବରେ ଶିଖିଥିଲା ।

ଏହାପରେ ବେଙ୍ଗ ମହୁମାଛିମାନଙ୍କୁ ଡାକି ପକାଇଲା । ସେମାନେ ଆଉ ଅପେକ୍ଷା ନ କରି ଆସି ଶୀଘ୍ର ଅଙ୍ଗରକ୍ଷୀଗଣଙ୍କୁ ଭିଣ୍ଡି ଫୋଟାଇଦେଲେ । ସେମାନଙ୍କ ଦେହ ଖୁବ୍ ଜୋରରେ ଜ୍ୱାଳା ଯନ୍ତ୍ରଣା ହେଲା । ଏଣୁ ସେମାନେ ସେଠାରୁ ପଳାଇଲେ ।

ମହାରାଜା ଏ ଅବସ୍ଥା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ସାମାନ୍ୟ ବେଙ୍ଗଟା ଏତେ ହଇରାଣ କଲା । ଏଥିରୁ ସେ ବିଚଳିତ ହୋଇଗଲେ । ସେ ପବନ ଦେବତାଙ୍କୁ ଡ଼ାକି ପକାଇଲେ । ପବନ ଦେବତା ତୋଫାନ ଆକାର ଧରି ଆସିଲେ । କିନ୍ତୁ କୁକୁଡ଼ା ଖୁବ୍ ଜୋରରେ ପକ୍ଷିକରି ଏବଂ ତାହାର ପର ହଲାଇ ପବନ ଦେବତାଙ୍କୁ ଅଟକାଇ ଦେଲା । ପବନ ଦେବତା ତେଣୁ କିଛି ସମୟ ପରେ ସେ ସ୍ଥାନ ଛାଡ଼ି ପଳାଇଗଲେ ।

ମହାରାଜା ନିଜର କୁକୁର ଦଳକୁ ସଙ୍କେତ ଦେଲେ, ସେମାନେ ଇଙ୍ଗିତ ପାଇବା ମାତ୍ରେ ଧାଇଁଆସିଲେ । ମାତ୍ର ତା ପୂର୍ବରୁ ସିଂହଟା ସେଠାରେ ପ୍ରସ୍ତୁତ ହୋଇ ରହିଥିଲା । ଫଳରେ କୁକୁରମାନଙ୍କ ଉଦ୍ୟମ ପଣ୍ଡହେଲା ।

ଏ ଅବସ୍ଥାରେ ମହାରାଜା କଣ କରିବେ ? ତାଙ୍କର ମୁଣ୍ଡ ଚକ୍କର ଖାଇଗଲା । ସେ ଆତଙ୍କିତ ହୋଇ ପଡ଼ିଲେ । ତେବେ ତାଙ୍କର ହାବଭାବ ବଦଳି ଯାଇଥିଲା । ସେ ଏଥର ସନ୍ଧି କରିବେ ବୋଲି ସ୍ଥିର କଲେ । ସେ ତେଣୁ ସହାନୁଭୂତି ସହକାରେ ବେଙ୍ଗ ଆଡ଼କୁ ଚାହିଁଲେ ।

ଏଣିକି ବେଙ୍ଗ ଟିକିଏ ଦମ୍ଭ ଧରି ତାର ବକ୍ତବ୍ୟ ପୁରା କଲା । କହିଲା—ମହାରାଜ ! ପୃଥିବୀରେ ବର୍ଷାର ଏକାନ୍ତ ଆବଶ୍ୟକତା ରହିଛି । ସେଠାରେ ଭୀଷଣ ମରୁଡ଼ି ଦେଖା ଦେଇଛି । ଜୀବଜନ୍ତୁ-ମାନେ ଖାଦ୍ୟ ପାଣିପାଇଁ ଖୁବ୍ ହଇରାଣ ହେଉଛନ୍ତି । ତେଣୁ ସେଠାରେ ଶୀଘ୍ର ବର୍ଷା କରାଇ ଦିଅନ୍ତୁ ।

ଏହାଶୁଣି ମହାରାଜା କହିଲେ ଆଚ୍ଛା ବେଙ୍ଗ କକା କକା ! ଏଥିପାଇଁ ତୁମେ ଏତେ ବାଟ ଆସିଛ ?

—ହଁ ବେଙ୍ଗ ଉତ୍ତର ଦେଲା ।

ମହାରାଜା ବେଙ୍ଗକୁ କଳା ବୋଲି କହିବାରୁ ସମସ୍ତେ ଖୁସି ହୋଇ ଗଲେ । ତେବେ ବେଙ୍ଗର ସାହାସ ଦେଖି ବା ଅନ୍ୟ କଣ ପାଇଁ ସେ କଳା କହିଥିଲେ ତାହା ଜଣାନାହିଁ । ବେଙ୍ଗ ତାହା ଶୁଣି ଖୁବ୍ ଗର୍ବରେ ରାଜାଙ୍କ ଆଡ଼କୁ ଅନାଇଲା ।

ରାଜା କହିଲେ ତୁମେ ଯାଅ । ବର୍ଷାକୁ ମୁଁ ପଠାଉଛି । ଏହା ପରେ ବେଙ୍ଗ, ମହୁମାଛି, କୁକୁଡ଼ା ଓ ସିଂହ ପୃଥିବୀକୁ ଫେରିଲେ । କିନ୍ତୁ ସେମାନେ ଖାଲି ହାତରେ ଆସିଲେ ନାହିଁ । ବର୍ଷା ମଧ୍ୟ ଆସିଲା ।



## ମହାନ୍ ଶିଳ୍ପୀର କାହାଣୀ

ଗୋଟିଏ ଗ୍ରାମରେ ଜଣେ ଯୁବକ ଥିଲା । ତାର ନାମ ସୀନୋସ୍ନା । ସେ ଥରେ ଘର ଛାଡ଼ି ରାଜଧାନୀ ଟୋକିଓ ଅଭିମୁଖେ ବାହାରିଲା । ବର୍ଷା ପିଟୁଥାଏ । ଖୁବ୍ ଜୋରରେ ଥଣ୍ଡା ପବନ ବହୁଥାଏ । ଜଙ୍ଗଲିଆ ରାସ୍ତାରେ ସୀନୋସ୍ନା ଅଣନିଶ୍ୱାସୀ ହୋଇ ଆଗେଇ ଚାଲିଥାଏ ।

ସୀନୋସ୍ନାର ମନ ଭିତରେ ଥାଏ ଗୋଟାଏ ନିଶା, ଚିତ୍ରକଳାର ନିଶା, ସେ ନିଶାର ଶକ୍ତି ତୋଫାନଠାରୁ ମଧ୍ୟ

ବେଗଶାଳୀ । କିନ୍ତୁ ତାର ମନର ବଳ ସତ୍ତ୍ୱେ ଅଙ୍ଗ ପ୍ରତ୍ୟଙ୍ଗ ତାଳ ମିଳାଇ ଚାଲିପାରୁ ନ ଥାନ୍ତି । ସେ କ୍ଷଣେ କ୍ଳାନ୍ତ ହୋଇ ପଡ଼ୁଥିଲା । ସେ ଚାରିଆଡ଼କୁ ଚାହିଁଲା । ଅରଣ୍ୟରେ ମେତ୍ତ ବା ଆସିବ କେଉଁଠୁ ? ସେ ତଥାପି ଚାହୁଁଥାଏ ଆଗକୁ ଅନେକ ଆଗକୁ । କାଳେ କେଉଁଠି ଆଲୋକର କ୍ଷୀଣ ରେଖାଟିଏ ଦେଖାଯିବ । କିନ୍ତୁ ସେ ନିରାଶ ହେଲା । କିନ୍ତୁ କରିବ କଣ ? ପାହାଡ଼ିଆ କଣ୍ଟକାକୀର୍ଣ୍ଣ ରାସ୍ତାରେ ଆଗେଇବା ବ୍ୟତୀତ ଅନ୍ୟ ଉପାୟ ନାହିଁ । ଚାଲୁ ଚାଲୁ "ସୀନୋୟା" ଦେଖିଲା ସେ ପାହାଡର ଶୀର୍ଷ ସ୍ଥାନରେ ପହଞ୍ଚି ଯାଇଛନ୍ତି । ଓଃ କି ଭୟଙ୍କର ଦୃଶ୍ୟ ସତେ ! ସେହି ଘୋର ଅରଣ୍ୟ ମଧ୍ୟରେ ସେ ଥିଲା ଏକାକୀ । ସେ ଆଣ୍ଠେଇ ପଡ଼ି ଦୁଇହାତ ଉପରକୁ ଟେକିଲା । ତା ମୁହଁରୁ ବାହାରି ଆସିଲା ହେ ପ୍ରଭୁ !

କିଛି ସମୟ ମଉନ ହୋଇ ଆଖିବୁଜି ବସିବାପରେ ସେ ମନେ କଲା ସତେ ଯେପରି ତୋଫାନ କମିଯାଇଛି । ତୋଫାନର ସ୍ଥାନ ପୂରଣ କରିଥିଲା ସୁଗନ୍ଧିତ ମଳୟ ପବନ । କିଛି ସମୟ ପରେ ବର୍ଷା ଛାଡ଼ିଗଲା ଓ ଆକାଶ ପରିଷ୍କାର ହୋଇଗଲା । ଜହ୍ନ ବି ଉଇଁଲା । ଯୁବକ ସୀନୋୟା ଲକ୍ଷକଲା ବହୁ ଦୂରରେ ସତେ ଯେପରି ଆଲୁଅଟିଏ ଟିଞ୍ଜି ମିଞ୍ଜି ହୋଇ ଜଳୁଛି । ଏହା କଣ ବାସ୍ତବ ? ନା, ଅବାସ୍ତବ ? ଏହି ନିର୍ଜନ ଅରଣ୍ୟରେ ଆଲୋକ ଆସିଲା କେଉଁଠୁ ? ଯୁବକଟି ଅନୁଭବ କଲା ଏକ ନୂତନ ଶକ୍ତିର ପ୍ରେରଣା । ସେ ଆଗେଇ ଚାଲିଲା ସେହି ଆଲୋକ ଆଡ଼କୁ ।

ସେ ଚାଲି ଚାଲି କିଛିବାଟ ଗଲା ପରେ ଆଲୋକ କ୍ରମଶଃ ଉଜ୍ଜ୍ୱଳ ହେଲା । ଦେଖିଲା ଆଗରେ ଗୋଟାଏ କୁଟୀର । ସେ କୁଟୀରର ଦରଜାରେ ଠକ୍ ଠକ୍ କଲା ।

କିଏ ? ଭିତରୁ କ୍ଷୀଣ ସ୍ୱର ଶୁଣାଗଲା ।

—ମୁଁ ଜଣେ ପଥିକ । ଖୁବ୍ କ୍ଳାନ୍ତ । ଯଦି ଆପଣଙ୍କର ଆପତ୍ତି ନଥାଏ ତେବେ ଆପଣଙ୍କ ଘରର ଗୋଟାଏ କୋଣରେ ରାତିଟା ପୁହାଇ ଦେବି ।

କବାଟ ଖୋଲିଲା । ଭିତରକୁ ଆସନ୍ତୁ ଶୁଣାଗଲା ।

—ଯୁବକଟି ଭିତରକୁ ଯାଇ ଅବାକ ହୋଇଗଲା । ତାଙ୍କୁ ସ୍ୱାଗତ କରୁଛି ଜଣେ ଅପୂର୍ବ ସୁନ୍ଦରୀ ଯୁବତୀ । ଏହି ଘନ ଅରଣ୍ୟ ମଧ୍ୟରେ ଏପରି ଜଣେ ସୁନ୍ଦରୀ ଯୁବତୀ ଏକୁଟିଆ ରହୁଛି କିପରି ? ଯୁବକ ସୀନୋସୁ୍ୟ ତା ଆଡ଼କୁ ମୁହଁ କରି ଛିଡ଼ା ହୋଇଥାଏ । କିଛି ସମୟର ନୀରବତା ଭଙ୍ଗକରି ଯୁବତୀଟି କହିଲା ଦେଖନ୍ତୁ ମୋ ପାଖରେ କେବଳ ଗୋଟାଏ ମାତ୍ର ଖଟ ଅଛି । ସେଇଥିରେ ଆପଣ ଶୁଅନ୍ତୁ । ମୁଁ ରାତିଟା କୌଣସି ମତେ କାଟିଦେବି । ମୋର କୌଣସି କଷ୍ଟ ହେବ ନାହିଁ । ମୁଁ ତ ପ୍ରାୟ ରାତିରେ ଜାଗ୍ରତ ଅବସ୍ଥାରେ ଥାଏ । ଆଚ୍ଛା ଆପଣ ଟିକିଏ ବସନ୍ତୁ । ମୁଁ କିଛି ଖାଦ୍ୟ ଆପଣଙ୍କ ପାଇଁ ନେଇ ଆସେ । ସୀନୋସୁ୍ୟ ତା ଆଡ଼କୁ ଅବାକ୍ ହୋଇ ଚାହିଁ ରହିଥିଲା । ଅଳ୍ପସମୟ ପରେ ତାର ସମ୍ମୁଖରେ ଯେତେବେଳେ ଖାଦ୍ୟ ପରସା ହେଲା ସେ ଏତେ ଭୋକିଲା ଥିଲା ଯେ କିଛି ନଭାବି ଚିନ୍ତି ଖାଦ୍ୟତକ ଖାଇ ଦେଲା । ଖାଇସାରିବା ପରେ ତାକୁ ନିଦମାଡ଼ିବା ସ୍ୱାଭାବିକ୍, କିନ୍ତୁ ସେ ଅନେକ ସମୟ ଧରି ସେ ଭାବୁଥିଲା ନିର୍ଜନ ଅରଣ୍ୟରେ ଥିବା ଏହି ସୁନ୍ଦରୀ ଯୁବତୀର କଥା । ଅନେକ ସମୟ ଏପରି ଚିନ୍ତା କରିବା ପରେ କେତେବେଳେ ଯେ ତାକୁ ନିଦ ଆସିଯାଇଥିଲା ସେ ଜାଣିପାରି ନ ଥିଲା ।

ହଠାତ୍ ଏକ ବିଚିତ୍ର ଧ୍ୱନିଶୁଣି ଯୁବକ ସୀନୋସୁ୍ୟର ନିଦ ଭାଙ୍ଗି ଗଲା । ଏହି ଶବ୍ଦ ଆସୁଥିଲା ପାର୍ଶ୍ୱବର୍ତ୍ତୀ କୋଠରୀରୁ । ସେ ଧିରେ ଧିରେ

ସେ ପଲଙ୍କ ଉପରୁ ଯାଇ ସେହି କୋଠରି ଭିତରେ •ପ୍ରବେଶକଲା । ଯାହା ଦେଖିଲା ସେଥିରେ ସେ ବିସ୍ମିତ ନ ହୋଇ ରହିପାରିଲା ନାହିଁ । ସେ ଦେଖିଲା ଯେ ସମ୍ମୁଖରେ ରହିଛି ଭଗବାନ ବୁଦ୍ଧଙ୍କର ପ୍ରତିମୂର୍ତ୍ତି । ମୂର୍ତ୍ତି ନିକଟରେ ରହିଛି ଅନ୍ୟ ଏକ ଯୁବକର ଶବ । ଏହା ସମ୍ମୁଖରେ ଯୁବତୀଟି ତନ୍ମୟ ହୋଇ ନୃତ୍ୟ କରୁଛି । ଯୁବକଟି ଉପରେ ଆଖି ପଡ଼ିବା ମାତ୍ରେ ଯୁବତୀଟି ନୃତ୍ୟ ବନ୍ଦ କରି ଦେଲା । ପ୍ରଥମତଃ ସେ ରାଗିଯାଇ ଥିଲା । କିନ୍ତୁ ପରେ କ୍ରୋଧ ସମ୍ବରଣ କରି ସେ ମୁରୁକି ମୁରୁକି ହସିଉଠିଲା, କହିଲା, ଆଜି ଆପଣଙ୍କ ନିଦ୍ରାଭଙ୍ଗ ପାଇଁ ମୁଁ ଦୁଃଖିତ ମୋତେ କ୍ଷମା କରନ୍ତୁ । ଯୁବକ କହିଲା ଏଥିରେ ମୋର କ୍ଷମା କରିବାର କଣ ଅଛି । କ୍ଷମାତ ଆପଣଙ୍କର କରିବାର କଥା କାରଣ ମୁଁ ଆପଣଙ୍କର ଏହି ଏକାନ୍ତ ବାସରେ ବାଧା ସୃଷ୍ଟି କରିଛି । ମୁଁ ଦେଖୁଛି, ଆପଣ ଜଣେ ଉଚ୍ଚ କୋଟୀର ନୃତ୍ୟଶିଳ୍ପୀ, କିନ୍ତୁ ଆପଣଙ୍କ ପରି ଜଣେ ବିଚକ୍ଷଣ ଶିଳ୍ପୀ ପାଇଁ କଣ ଏହି କୁଟୀରଟି ଉପଯୁକ୍ତ ? ଆପଣ ଏଠାକୁ କାହିଁକି ... ?

ହଁ ମୁଁ ଜଣେ ନୃତ୍ୟ ଶିଳ୍ପୀ । ଏଥିରେ ସନ୍ଦେହ ନାହିଁ । ଦିନ ଥିଲା ଯେତେବେଳେ ଜାପାନର ସମ୍ରାଟ ଓ ଟୋକିଓର ବଡ଼ ବଡ଼ ସୌଦାଗର ମୋର ନୃତ୍ୟ ଦେଖିବା ପାଇଁ ବ୍ୟାକୁଳ ହେଉଥିଲେ କିନ୍ତୁ...... ।

ହଠାତ୍ କଣ ଭାବି ସେ ଆଉ କହିପାରିଲା ନାହିଁ । କିନ୍ତୁ ଯୁବକଟି ଆଉ କିଛି ଶୁଣିବାକୁ ବ୍ୟଗ୍ର ହୋଇ ଚୁପ୍ ରହିଥାଏ । କିଛି ସମୟ ପରେ ସେ କହିଲା—ଆଚ୍ଛା ଆପଣ ମୋର ଜୀବନ କାହାଣୀ ଶୁଣିବାକୁ ଚାହାନ୍ତି ତେବେ ଚାଲ ଆର ଘରକୁ ଯିବା ।

ସୀନୋସ୍ନା ଆଉ କୋଠରୀରେ ଥିବା ପଲଙ୍କ ଉପରେ ବସି-ପଡ଼ିଲା । ଯୁବତୀଟି କାନ୍ଥକୁ ଆଉଜି ଠିଆହୋଇ ରହିଲା । ତାପରେ ସେ ଆରମ୍ଭ କଲା ନିଜ ଜୀବନ କାହାଣୀ—

ମାତ୍ର ଦୁଇବର୍ଷ ତଳର କଥା ଅନେକ ସୌଦାଗର ମୋ ନୃତ୍ୟର ଆୟୋଜନ କରୁଥିଲେ । ସାରା ଟୋକିଓ ସହରରେ ମୋ ନୃତ୍ୟର ଲୋକପ୍ରିୟତା ଥିଲା ଶୀର୍ଷ ସ୍ଥାନରେ । ହଠାତ୍ ଦିନେ ମୋ ଘରକୁ ଆସିଲେ ଜଣେ ଯୁବକ । ମୋର ନୃତ୍ୟ ଦେଖି ସେ ତନ୍ମୟ ହୋଇ ଯାଉଥିଲେ । କ୍ରମେ ତା ସହିତ ମୋର ବନ୍ଧୁତା ହେଲା, କିନ୍ତୁ ଅଳ୍ପ କେଇଦିନ ପରେ ମୁଁ ତାଙ୍କୁ ଭଲ ପାଇ ବସିଲି । ଅବସ୍ଥା ଏପରି ହେଲା ଯେ ଆମେ ପରସ୍ପରକୁ ମିନିଟିଏ ବି ଛାଡ଼ି ରହିପାରିଲୁ ନାହିଁ । ପିତା ମାତାଙ୍କ ବିରୋଧ ସତ୍ତ୍ୱେ ଆମେ ବିବାହ କଲୁ ।

ଏହାପରେ ଏକବର୍ଷ ପର୍ଯ୍ୟନ୍ତ ଆମେ ସାରା ସଂସାରକୁ ଭୁଲି ମହାନନ୍ଦରେ ଥିଲୁ । କିନ୍ତୁ ଗୋଟିଏ ବର୍ଷ ଯେ ଏତେ ଶୀଘ୍ର ସରିଯିବ ମୁଁ କଳ୍ପନା କରିନଥିଲି, ମାତ୍ର ବର୍ଷକ ପରେ

—କଣ ହେଲା ବର୍ଷେ ପରେ ?

ଯୁବତୀର ଆଖିରୁ ଲୁହ ଗଡ଼ିଆସିଥିଲା । ସେ ବର୍ଷକ ପରେ ଆଖି ବୁଜିଲେ ଚିରଦିନ ପାଇଁ । ମୋର ନୃତ୍ୟକୁ ସେ କେତେ ଭଲ ପାଉ ନ ଥିଲେ ! ତନ୍ମୟ ହୋଇ ସେ ମୋର ନୃତ୍ୟ ଦେଖୁଥିଲେ । ତେଣୁ ମୁଁ ଖୁବ୍ ଭଲ ଭଲ ପୋଷାକ ପିନ୍ଧି ତାର ଶବ ସମ୍ମୁଖରେ ରାତିସାରା ନୃତ୍ୟ କରୁଛି । ତାର ଆତ୍ମାକୁ ଶାନ୍ତି ମିଳୁ । ଏହାହିଁ ମୋର ଏକମାତ୍ର କାମନା ।

ଅବାକ୍ ହୋଇ ଶୁଣୁଥିଲି ସୀନୋସ୍ନା ସେହି ନୃତ୍ୟଶିଳ୍ପୀ ଯୁବତୀଟିର ଅସାଧାରଣ ଜୀବନ କାହାଣୀ ।



॥ ୨ ॥

ମୃନ୍ଦର ବର୍ଷପରେ ମେକ୍ସିକୋର ବିଖ୍ୟାତ ଚିତ୍ରକର "ସୀନୋସ୍ନା ଲୋପାଜ୍" ନିଜର ମନୋହର ଚିତ୍ରଶାଳାରେ ବସି କୌଣସି ଏକ ସୌଦାଗରର ଚିତ୍ର ଅଙ୍କୁଥିଲେ । ସୌଦାଗର ମାନେ ବହୁଟଙ୍କା ଦେଇ ତାଙ୍କଦ୍ୱାରା ନିଜର ଛବି ତିଆରି କରୁଥିଲେ ।

ଏତିକିବେଳେ ଜଣେ ଭୃତ୍ୟ ଆସି ଖବର ଦେଲା ଜଣେ ବୁଢ଼ୀ ଆପଣଙ୍କ ସହ ଦେଖା କରିବାକୁ ଚାହେଁ, ସେ ଗରିବ । ତିନିଦିନ ହେଲା ଆପଣଙ୍କୁ ଦେଖା କରିବାକୁ ଆସୁଛି । କିନ୍ତୁ ଆମେ ତାକୁ ଫେରାଇ ଦେଉଛୁ ।

ମୂର୍ଖ ! ସୀନୋସ୍ନା ଲୋପାଜ ତାଙ୍କ ଭୃତ୍ୟର ଉପରେ ବିଗିଡ଼ି ଯାଇ କହିଲେ, ଗରିବ ହେଲା ବୋଲି ତାକୁ ଫେରାଇ ଦେବାକୁ ତୁମେ କିଏ ? ଯାଅ ତାକୁ ନେଇଆସ ।

ଚିତ୍ରଶିଳ୍ପୀଙ୍କ ଆଦେଶ ପାଇ ଭୃତ୍ୟ ସେହି ବୁଢ଼ୀକୁ ନେଇ ଆସିଲା । ବୁଢ଼ୀଟିର ସ୍ୱାଗତ କରିବା ପରେ ଶିଳ୍ପୀ ତାର ଆସିବାର କାରଣ ପଚାରିଲେ—

ମୁଁ ମୋର ଚିତ୍ରଟି ପ୍ରସ୍ତୁତ କରିବାକୁ ଚାହେଁ, କିନ୍ତୁ ଚିତ୍ରଟି ହେବ ମୋର ଯୌବନର—ମୋର ବାର୍ଦ୍ଧକ୍ୟର ନୁହେଁ। ଅତୀତରେ ମୁଁ ଜଣେ ସୁନ୍ଦରୀ ଯୁବତୀ ଥିଲି । ତାହାର ଏକମାତ୍ର ସନ୍ତକ ହେଉଛି ମୋର ପୋଷାକଟି । ବୁଢୀ ଏହା କହି ନିଜର ପୁଟୁଳିରୁ ପୋଷାକ ବାହାର କଲା ।

ଆରେ ! ଆପଣ ! ଶିଳ୍ପୀ ସୀନୋୟା ବିସ୍ମିତ ହୋଇ ପଚାରିଲା ।

ଆପଣ କଣ ମୋତେ ଚିହ୍ନି ପାରିଛନ୍ତି ? ସେହି ଘନ ଘୋର ଅନ୍ଧକାର ମଧ୍ୟ ରାତ୍ରରେ ଜଣେ ଅସହାୟ ପଥିକ ରୂପେ ମୁଁ ଆପଣଙ୍କ ଦ୍ୱାରସ୍ଥ ହୋଇ ଥିଲି, ସତେ କଣ ଆପଣ ମୋତେ ଚିହ୍ନି ପାରୁଛନ୍ତି ।

ମୁଁ ଅନୁଭବ କରୁଛି ଭଗବାନ ମୋତେ ଯଥା ସ୍ଥାନକୁ ନେଇ ଆସିଛନ୍ତି । ସେ ଦିନ ମତେ ଆପଣ ନୃତ୍ୟ କରିବା ଅବସ୍ଥାରେ ଦେଖିଥିଲେ । ମୋର ଏତିକ ଅନୁରୋଧ ଯେ ଆପଣ ମୋର ସେଭଳି ଏକ ଚିତ୍ର ତିଆରି କରି ଦିଅନ୍ତୁ । କିନ୍ତୁ ଆପଣଙ୍କୁ ଦେବା-ପାଇଁ ମୋ ପାଖରେ ଆଉ କିଛି ନାହିଁ । ଏହି ପୋଷାକଟି ମୁଁ ଆପଣଙ୍କୁ ଭେଟି ଦେଇପାରେ ।

ଶିଳ୍ପୀ ସୀନୋୟା ବୁଢୀଙ୍କର ଏପରି ଏକ ଚିତ୍ର ଆଙ୍କିଦେଲେ ଯାହା ତାଙ୍କ ଜୀବନର ଶ୍ରେଷ୍ଠତମ କୃତିରୂପେ ପରିଗଣିତ ହେଲା । ଯୌବନରେ ସେ ଅସାଧାରଣ ସୁନ୍ଦରୀ ଥିଲେ ଏହା ଚିତ୍ରଟିରେ ଜୀବନ୍ତ ରୂପେ ଫୁଟି ଉଠିଥିଲା ।

ବୁଢୀଟି ନିଜ ପୋଷାକଟି ଦେବାପାଇଁ ଯେତେ ଅନୁରୋଧ କଲେ ଶିଳ୍ପୀ ଆଦୌ ଶୁଣିଲେ ନାହିଁ । ସେ କହିଲେ ପୋଷାକଟି ତାଙ୍କର କୌଣସି କାମରେ ଆସିବ ନାହିଁ ।

ବୁଢ଼ୀ ପୋଷାକ ନେଇ ଚାଲିଗଲେ, କିନ୍ତୁ ତାଙ୍କ ପଛେ ପଛେ ଶିଳ୍ପୀ ସିନୋପ୍ସା ଜଣେ ବିଶ୍ୱସ୍ତ ଚାକରକୁ ଗୋପନରେ ପଠାଇଥିଲେ ତାଙ୍କର ଠିକଣାଟି ଜାଣି ନେବା ପାଇଁ ।

ଚାକର ଫେରିଆସି ଖବର ଦେଲା ଯେ ସହରର ଉପକଣ୍ଠରେ ନିଃସ୍ୱ ଭିକ୍ଷୁକମାନଙ୍କର ଏକ ବସ୍ତିରେ ଏକ କ୍ଷୁଦ୍ର କୁଟୀରରେ ବୃଦ୍ଧା ବାସ କରୁଛନ୍ତି ।

ପରଦିନ ସଙ୍ଗରେ ଅନେକ ଖାଦ୍ୟ ଦ୍ରବ୍ୟ, ବସ୍ତ୍ର ଓ କିଛି "ସେ୍ୟନ୍" (ଜାପାନୀ ମୁଦ୍ରା) ନେଇ ଶିଳ୍ପୀ ପହଞ୍ଚିଗଲେ ବୁଢ଼ୀଙ୍କ ବାସ ଭବନରେ । ତାଙ୍କ ଶେଷ ଜୀବନରେ ତାଙ୍କୁ କିଛି ସାହାଯ୍ୟ କରିବା ଶିଳ୍ପୀଙ୍କର ଉଦ୍ଦେଶ୍ୟ ଥିଲା । କୁଟୀର ଦ୍ୱାର ନିକଟରେ ଥିଲା ସମ୍ପୂର୍ଣ୍ଣ ନିର୍ଜନତା । କୌଣସି ସ୍ୱର ନ ଶୁଣି ଶିଳ୍ପୀ ଭିତରକୁ ପଶିଲେ । ଭିତରେ ମଧ୍ୟ ପରିଷ୍କାର ପରିଚ୍ଛନ୍ନ କୋଠରୀଟି ମଧ୍ୟରେ ଭଗବାନ ବୁଦ୍ଧଙ୍କର ସେହି ପୁରୁଣା ମୂର୍ତ୍ତିଟି ଥିଲା । ପାଖରେ ଥିଲା ସେହି ପ୍ରେମିକ ଯୁବକର ଚିତ୍ର । ଏବଂ ତା ପାଖକୁ ଲାଗି ରଖା ଯାଇଥିଲା ବୃଦ୍ଧାଙ୍କର ଯୌବନର ଚିତ୍ର, ପଲଙ୍କ ଉପରେ ବୃଦ୍ଧା ଆଖି ବୁଜିଥିଲେ ଚିରଦିନ ପାଇଁ ।

ଶିଳ୍ପୀ ଏହା ଦେଖି ମର୍ମାହତ ହେଲେ ଓ ସେ ସ୍ଥାନରୁ ଫେରି ଆସିଲେ । ଏହାପରେ ସେ ଆସି ଆଙ୍କିଲେ ବୃଦ୍ଧାଙ୍କର ଏକ ସୁନ୍ଦର ଅଭିନବ ଚିତ୍ର । ଯାହା ପରେ ସହରରେ ରାଜାଙ୍କ ଦ୍ୱାରା ପୁରସ୍କୃତ ହେଲା । ତାହାହିଁ ଥିଲା ଶିଳ୍ପୀ ସୀନୋପ୍ସା ଲିପାଦ୍‌ଙ୍କର ଶେଷ କୃତି ।



# ଯାହାକୁ ଯେପରି ସାଜେ

ଓହାଇଟି ଦ୍ୱୀପର ପର୍ବତ ପାଖରେ ରହୁଥିଲେ ଦୁଇଟି ଲୋକ । ଜଣଙ୍କର ନାମ ଓବେକା ଓ ଅନ୍ୟଟିର ନାମ ଟିମୋଲସ୍ । ଓବେକା ଦେଖିବାକୁ ଡେଙ୍ଗା ସୁସ୍ଥ ସବଳ, ମାତ୍ର କାମକୁ ନପଟ ଅଳସୁଆ । ସବୁ କାମରେ ମାନ୍ଦା ବୋଲି ତାର ନାମ ଓକା ।

ମାତ୍ର ଟିମୋଲସ୍ ଥିଲାଟି ଓବେକାଠାରୁ ସମ୍ପୂର୍ଣ୍ଣ ଭିନ୍ନ ପ୍ରକୃତିର । ସେ ଅଳସୁଆ ହେଲେ ବି ସେ ଥିଲା ଖୁବ୍ ବୁଦ୍ଧିମାନ । ଅନ୍ୟକୁ ଠକାଇବା ବିଷୟରେ ସେ ଥିଲା ଧୁରନ୍ଧର । ଏଣୁ ଏହି ଗୁଣ ଯୋଗୁଁ ଲୋକେ ସର୍ବଦା ତାଠାରୁ ଦୂରେଇ ରହୁଥିଲେ । ମାତ୍ର ଏହିଗୁଣ ଯୋଗୁଁ ଓବେକା ଟିମୋଲସ୍‌କୁ ବହୁତ ଖାତିର କରୁଥିଲା ।

ଥରେ ଆପଣାର ଫସଲକୁ ସହରକୁ ନେବା ପାଇଁ ଓବେକାର ଗୋଟାଏ ଘୋଡ଼ା ଦରକାର ପଡ଼ିଲା ସେ ତା ସାଙ୍ଗ "ମୌସା" ପାଖକୁ ଯାଇ କହିଲା ଭାଇ । ମୋର ଗୋଟାଏ କାମ ପଡ଼ିଛି । ତୁମ ଗଧଟି ଦିନକ ପାଇଁ ମତେ ଦିଅ, ମୌସା କହିଲା ଓବେକା ! ମୋ ଗଧଟାତ କାଲିଠାରୁ କୁଆଡ଼େ ପଳାଇଛି । ସବୁଆଡ଼େ ଖୋଜି ଖୋଜି ଥକିଲିଣି । କିନ୍ତୁ ନ ପାଇ ଖୁବ୍ ଦୁଃଖିତ ।

ଓବେକା କହିଲା—ହଉ ଛାଡ଼ । ପ୍ରକୃତରେ ଗୋଟାଏ ଗଧରେ କଣ ମୋର କାମ ଚଳିବ ? ଏବେ ଘୋଡ଼ାଟିଏ ବା ମୁଁ କେଉଁଠୁ ଆଣିବି ? ସହରକୁ ଫସଲତକ ନେବି କିପରି ?

"ମୌସା" ତାଙ୍କୁ ପରାମର୍ଶ ଦେଇ କହିଲା— ତମେ "ଟାଉନସେଣ୍ଡ"
ପାଖକୁ ଯାଅ । ତାଙ୍କୁ କୁହା ବୋଲି କରି ତାଙ୍କ ଘୋଡ଼ାକୁ
ଭଡ଼ାନିଅ ।

ଓବେକା କହିଲା ଟାଉନସେଣ୍ଡ । ସେହି କଞ୍ଜୁସ ବୁଢ଼ା ? ସେ
ମତେ ଭଡ଼ା ମାଗିବ । ସେଇଟା ଏମିତିକିଆ ଲୋକ ଯେ ତା ସହ
କଥାବାର୍ତ୍ତା ହେଲେ ସେ ପଇସା ମାଗେ ।

ଯାହାହେଉ ଓବେକା ଏବେ କଣ କରିବ ? ଗରଜତ
ପଡ଼ିଛି । ଓଠକୁ ଦାନ୍ତରେ ଚିପି ସେ କିଛି ସମୟ ଭାବିଲା, ଶେଷରେ
ଭଡ଼ାରେ ଘୋଡ଼ା ଆଣିବାଲାଗି ସେ ଟାଉନସେଣ୍ଡ ଘରକୁ ବାହାରିଲା ।

ଟାଉନସେଣ୍ଡ ଘୋଡ଼ା ବିଷୟରେ କଥା ପଡ଼ିବାରୁ କହିଲା ମୋ
ଘୋଡ଼ାଟି ଖୁବ୍ ବଢ଼ିଆ, ମାତ୍ର ଆକୁ ନେଲେ ପନ୍ଦର ଶିଲିଂ
ଦେବାକୁ ପଡ଼ିବ, କିନ୍ତୁ ଏକଥା ମନେ ରଖିଥିବ ତୁମ ମୁଣ୍ଡରେ
ଯେତିକି ଓଜନର ଜିନିଷ ବୁହାଯାଇ ପାରିବ ତାହାଠୁଁ ବେଶୀ
ଜିନିଷ ମୋ ଘୋଡ଼ା ଉପରେ ଲଦିବ ନାହିଁ ।

ଓବେକା କହିଲା କଣ କରିବି ? ଘୋଡ଼ାଟି ମୋର ଖୁବ୍
ଦରକାର । ମାତ୍ର ମୋ ପାଖରେ ପାଞ୍ଚ ସିଲିଂ ଅଛି । ଏହା କହି
ସେ ତା ପଇସା ଗଣିଲା ।

ଟାଉନସେଣ୍ଡ ତା' ଠାରୁ ପାଞ୍ଚ ସିଲିଂ ନେଇ ନେଇ କହିଲା
ଦିଅ ଦିଅ ସେତିକି । ଆଉ ଦଶ ଶିଲିଂ କାଲି ଘୋଡ଼ା ନେଲାବେଳେ
ଦେଇ ଦେଇ ନେବ ।

ଲୋକଟା ଆଗଭୁଗ କହି ତା ଠାରୁ ଏତେଗୁଡ଼ାଏ ପଇସା
ନେଇଗଲା ଓବେକାର ମନଟା ଖଟାହୋଇ ଯାଇଥାଏ । ବାଟଯାକ

ସେଇଆ ଘବ ଘବ ସେ ଘରକୁ ଫେରିଲା । ତା'ଠୁ ଏବେ ଘୋଡ଼ା ନେଇ ରକ୍ଷ୍ୟା ନାହିଁ ।

ପରଦିନ ସେ ସକାଳେ ବଜାର ଯିବ ବୋଲି ସଜ ହୋଇଥାଏ । ଝରକା ବାଟେ ଚାହିଁ ଦେଖିଲା, "ମୌସା" ତା ଗଧ ଉପରେ ଚଢ଼ି ତା ଘର ଆଡ଼କୁ ଆସୁଛି । ଓବେକାକୁ ଦେଖି ମୌସା କହିଲା—ଓବେକା ମୋ ଗଧଟା ମିଳିଗଲା, ଘଣ୍ଟ ଅଧକୁ ନିଜେ ଆସିଲା—ତମେ ଏହାକୁ ନିଅ ।

ଓବେକା ମନ ଦୁଃଖରେ କହିଲା—ଆରେ ମୁଁ କାଲି ତୁମ କଥାରେ ଟାଉସେଣ୍ଡ ପାଖକୁ ଗଲି । ତା ଘୋଡ଼ା ଭଡ଼ାରେ ଆଣିବାକୁ କଥାବାର୍ତ୍ତା କରି ଆସିଛି । "ମୌସା" ଏହା ଶୁଣି କହିଲା ତା ଘୋଡ଼ାକୁ ଫେରାଇ ଦିଅ । ତୁମ କାମ ମୋ ଗଧଦ୍ୱାରା ବେଶ ହୋଇ ପାରିବ ।

ଓବେକା କହିଲା ମୁଁ ଏପର୍ଯ୍ୟନ୍ତ ଘୋଡ଼ା ଆଣି ନାହିଁ କିନ୍ତୁ ତାକୁ ତ ପାଞ୍ଚ ଶିଲିଂ ଦେଇ ଦେଇଛି । ତା'ଠାରୁ ଆଜି ସେତିକ ମୋଟେ ଫେରସ୍ତ ମିଳିବନି, ସେ ଥରେ ଯାହା ନେଇଛି ଆଉ କଣ ଦେବ ? "ଓବେକା" ଓ "ମୌସା" କଥାବାର୍ତ୍ତା ହେଉଥିବା ବେଳେ ଟିମୋଲିସ୍ ଆସି ସେଠାରେ ପହଞ୍ଚିଲା । ସେ ସବୁକଥା ଶୁଣି ମାରି କହିଲା—ଆରେ ମୋତେ ତା ପାଖକୁ ନେଇ ଚାଲ୍ ମୁଁ ତୋ ଟଙ୍କା ତା'ଠାରୁ ଆଦାୟ କରାଇଦେବି ।

ଏହା ଶୁଣି ଓବେକା ମନେ ମନେ ଖୁବ୍ ଖୁସି ହୋଇଗଲା । ସେ କହିଲା, ଖୁବ୍ ଉତ୍ତମ କଥା ତାହେଲେ ଚାଲ ସଙ୍ଗେ ସଙ୍ଗେ ତା ଘରକୁ ଯିବା ଏହାପରେ ଓବେକା ଓ ଟିମୋଲିସ୍ ଯାଇ ଟାଉସେଣ୍ଡ

ଘରେ ପହଞ୍ଚିଲେ । ଟିମୋଲିସ୍ ଟାଉସେଣ୍ଡକୁ କହିଲି ଆମେ ଘୋଡ଼ା ନେବାକୁ ଆସିଛୁ । ଘୋଡ଼ାକୁ ଭଲ ରକମ ଖୁଆଇଛ ତ ?

ଟାଉସେଣ୍ଡ କହିଲି—ଘୋଡ଼ାଟି ଏଇଠି ଆମ୍ବଗଛ ମୂଳେ ବନ୍ଧା ହୋଇଛି । ମାତ୍ର ଘୋଡ଼ା ନେବା ଆଗରୁ ମୋତେ ଆଉ ଦଶ ଶିଲିଂ ଦିଅ ।

ଟିମୋଲିସ କହିଲି—ଟିକିଏ ରୁହ । ଆମେ ଟିକିଏ ଦେଖୁଁ ତୁମ ଘୋଡ଼ାଟା କେତେ କ ବଡ଼ ?

ଏହା ଶୁଣି ଟାଉସେଣ୍ଡ କହିଲି—ସେ ଖୁବ୍ ବଡ଼ । ଘୋଡ଼ାଟି ଘୋଡ଼ା ଆଉ ଦେଖିବ କଣ ? ଯାହା କଥା ଛୁଡ଼ୁଛି ସେଥିରୁ ପଚ୍ଛେଇବା କଥା ଆଉ ହୋଇପାରିବ ନାହିଁ । କାଲିଠାରୁ "ଓବେକା" ସହ କଥା ଛୁଡ଼ୁଛି ।

ଟିମୋଲିସ୍ କହିଲା କେତେ ବକୁଛ ହେ ? ଟିକିଏ ରହିଯାଅ, ଆମେ ଘୋଡ଼ାଟା ମାପିକରି ଦେଖିବୁ । ଏହା କହି ସେ ପକେଟରୁ ଫିତା କାଢ଼ି ମାପିବାକୁ ଆରମ୍ଭ କଲା । "ଓବେକା"କୁ ଗୁହିଁ କହିଲି । ତୁମର ବସିବା ଲାଗି ଅଠରଇଞ୍ଚ ଜାଗା ମଝିରେ ଦରକାର । ମୋ ଲାଗି ପନ୍ଦର ଇଞ୍ଚ, ମୋ ସ୍ତ୍ରୀ ପଛରେ ବସିବ ତା ଲାଗି ଅଠର ଇଞ୍ଚ ଦରକାର । ତୁମ ସ୍ତ୍ରୀ ଆଗରେ ବସିବ । ତା ପାଇଁ କୋଡ଼ିଏ ଇଞ୍ଚ ଜାଗା ଯଥେଷ୍ଟ ।

ଏହା ଶୁଣି ଟାଉସେଣ୍ଡ କହିଲି—ତମେ ଏ ସବୁ କଣ ଗପୁଛ ? ତମେ ଗୁରିଜଣ ମୋ ଘୋଡ଼ା ଉପରେ ବସିବ ସେ କଥା ହୋଇ ପାରିବ ନାହିଁ ।

ଘୋଡ଼ାକୁ ମାପୁ ମାପୁ ଟିମୋଲସ୍ କହିଲା ଆମକୁ, ବିରକ୍ତ କରନା, ଆମେ ଏବେ ପିଲାଙ୍କ ବସିବା ଲାଗି ଜାଗାର ହିସାବ କରୁଛୁଁ । "ଓବେକା"ର ପୁଅ "ଜନ୍" ଘୋଡ଼ାର ବେକ ଉପରେ ବସିଯାଇ ପାରିବ, ଝିଅ "ମୋନା"କୁ ଏଠି ପଟିରେ ବାନ୍ଧିଦେବା । ଆଉ ସବା ସାନ ଛୁଆ "ସିମ୍" ତା ମା କୋଳରେ ବସିବ ।

ଏହା ଶୁଣି ଟାଉନ୍ସେଣ୍ଡ କାବା ସେ ବିଗିଡ଼ି ଯାଇ କହିଲା – ତମେ ସବୁ ପାଗଳ ନା କଣ ? ଗୋଟାଏ ଘୋଡ଼ା ଏତେଗୁଡ଼ାଏ ଲୋକଙ୍କୁ ନେଇଯାଇ ପାରିବ ? ସେ ମରିବ ନା ବଞ୍ଚିବ ?

ଟିମୋଲସ୍ ଏହାପରେ କହିଲା—ମୋର ତୁମଠାରୁ ଏହା ଜାଣିବାର ଆବଶ୍ୟକ ନାହିଁ । ଏ କଥା ଓବେକା ବୁଝିବ, ସେ ନିଜେ ପରୀକ୍ଷାକରି ନେଉ, ଆମେ ପୁରା ଦଳଟିଯାକ କିମିତି ଯାତ୍ରା ଦେଖିବାକୁ ଯିବୁ ? ତାହା ହେଉଛି ଆମର ସମସ୍ୟା ।

ଏହା ଶୁଣି ଟାଉନ୍ସେଣ୍ଡ ଖପ୍ପା ହୋଇ କହିଲା ଆରେ ବାପ୍‌ରେ ବାପ୍ "ମ୍ୟାକ୍‌ଲବର୍ଗ" ଠାରେ ହେଉଥିବା ଯାତ୍ରା ? ନା, ନା, ଏତେବାଟ ପର୍ଯ୍ୟନ୍ତ ନିବାକୁ ମୁଁ ତୁମକୁ ଘୋଡ଼ା ଦେଇପାରିବି ନାହିଁ । ଏତେ ବାଟ ଗଲେ ମୋ ଘୋଡ଼ାର ଖୁରା ଆଉ ରହିବ ? ଘୋଡ଼ାକୁ ମାପୁ ମାପୁ ଟିମୋଲସ୍ କହିଲା– ଏଠି ମୁଁ ମୋ ଛୁଆଟାକୁ ରଖି ପାରିବି, କିନ୍ତୁ ତାକୁ କସିକରି ବାନ୍ଧି ଦେବାକୁ ହେବ ।

ଟାଉନ୍ସେଣ୍ଡ ଏଥର ଦୃଢ଼ ଭାବରେ କହିଲା—ପ୍ରକୃତରେ ତୁମେ ପାଗଳ ହୋଇ ଯାଇଛ, ତୁମକୁ ଘୋଡ଼ା ଦିଆଯିବ ନାହିଁ ।

ଟିମୋଲିସ୍ କହିଲା ଆଗରୁତ କଥା ଛିଡ଼ି ଯାଇଛି ଆମେ ଏ ଝଗଡ଼ା ତାହେଲେ କଚେରୀକୁ ନେବୁ । ଓବେକା ମଧ୍ୟ ତା କଥାରେ ହଁ ହଁ କରି ମୁଣ୍ଡ ହଲାଇଲା ।

ଟାଉସେଣ୍ଡ କହିଲା—ଏହି ନିଅ ତୁମର ପାଞ୍ଚ ସିଲିଂ, ତମେ ଏଠୁ ଆଗେ ଯିବନି ।

ଟିମୋଲିସ ରାଗିଯାଇ କହିଲା—ତୁମେ ୧୫ ସିଲିଂରେ ଘୋଡ଼ା ଦେବାକୁ କହି ଏବେ ପାଞ୍ଚ ସିଲିଂ କଣ ଦେଉଛ ? ତମେ ଆମକୁ କଣ ବୋକା ବନାଉଛ ?

ଓବେକା ମଧ୍ୟ କହିଲା ହଁ ହଁ ଠିକ୍‌କଥା । ଟାଉସେଣ୍ଡ କହିଲା—ଓବେକା ତମେ ତ ମୋତେ ପାଞ୍ଚ ସିଲିଂ ଦେଇଛ । ଟିମୋଲିସ୍ ଜୋରଦେଇ ପଚାରିଲା, କଣ ଏ କଥା ଠିକ୍ ନୁହେଁ ? ତୁମେ ପନ୍ଦର ସିଲିଂରେ ଘୋଡ଼ା ଦେବାକୁ ରାଜି ହୋଇଛ । ଟିକଏ ରହି ସେ ପୁଣି କହିଲା ଯଦି ତୁମେ ପନ୍ଦର ସିଲିଂ ନ ଫେରାଇବ ଜାଣିବୁ ତୁମେ ଚୁକ୍ତି ଖିଲାପ କଲ ଏଇ ଦୋଷ ପାଇଁ ଆମେ ତୁମକୁ ନିଶ୍ଚୟ କଚେରୀକୁ ନେବୁ ।

ଓବେକା ଘୋଡ଼ା ଆଡ଼କୁ ଚାହିଁ କହିଲା ଆରେ ହେ, ଆମ ଦାଦାଙ୍କୁ ବସାଇବା ? ତାଙ୍କ କଥାତ ମୁଁ ଭୁଲି ଯାଇଥିଲି ।

ଟାଉସେଣ୍ଡ ଏଥର ଦୀର୍ଘଶ୍ୱାସ ନେଲା । କାନମୁଣ୍ଡା ଆଉଁସି ଟିମୋଲିସ୍ ହାତରେ ପନ୍ଦର ସିଲିଂ ରଖି କହିଲା ଆରେ ଭାଇ ମୋ ଘୋଡ଼ା ଛାଡ଼ି ଦିଅ । ଏହା କହି ସେ ଘୋଡ଼ା ଉପରେ ଡେଇଁ ବସିଲା ଓ ଜୋରରେ ଘୋଡ଼ା ଚଳପଟାଇ ଦେଇ ସେଠୁ ଚାଲିଗଲା ।

ଓବେକା ଓ ଟିମୋଲସ୍ ଦୁହେଁ ହସିବାକୁ ଲାଗିଲେ । ହସି ହସି ଦୁହିଙ୍କ ପେଟ ଫୁଲିଗଲା । ଆଖିରୁ ଲୁହ ବୋହିଲା । ଓବେକା ଟିମୋଲସ୍‌କୁ ନେଇ ଘରକୁ ଫେରିଲା, ଓବେକାର ସ୍ତ୍ରୀ ଦୁହିଁଙ୍କୁ ଖାଇବା ପିଇବାକୁ ଦେଲା, ତେବେବି ସେମାନଙ୍କର ହସ ଥମୁ ନଥାଏ, ଓବେକା କହିଲା—ଭଲକାମ ଦେଖେଇଲ, ମୋ ଜୀବନରେ ମୁଁ କେବେ ଏମିତି ନବଜ୍ ଦେଖି ନାହିଁ ।

ଟିମୋଲସ୍ ଆପଣା ଟୋପି ପିନ୍ଧି ସହରର ଆଡ଼କୁ ମୁହାଁଇଲା । ପଛରୁ ଓବେକା କହୁଥାଏ—ଆଜ ଦିନଟିର କଥା କେବେ ଭୁଲି ହେବ ନାହିଁ । ପାଞ୍ଚ ଶିଲିଂ ଦେଇ ମୁଁ ପନ୍ଦର ଶିଲିଂ ପାଇଗଲି, ଟିମୋଲସ୍ ମୁହଁ ବୁଲେଇ ଦୂରକୁ ଚାଲିଗଲା । ଓବେକା ପକେଟରେ ହାତ ପୂରାଇଲା । ସଙ୍ଗେ ସଙ୍ଗେ ତାର ଆଖି ଦୁଇଟା ବଡ଼ ହୋଇଗଲା । ତାର ମୁଣ୍ଡକୁ ପିତ୍ତ ଉଠିଗଲା ।

ତାର ସ୍ତ୍ରୀ କହିଲା କଣ ହେ ! କଥା କଣ ? ଓବେକା ଧୀରେ ଧୀରେ କେବଳ କହିଲା—ଆଃ ! ଆପଣା ପକେଟରେ ହାତ ପୂରାଇ ସେ ଖାଲି ଅଣ୍ଡାଳୁ ଥାଏ । ବଡ଼ ପାଟିରେ ଖାଲି କହୁଥାଏ ସେ ଟୋକା ଟିମୋଲସ୍‌ଟା ଗଲା କୁଆଡ଼େ ? ସେ ମୋତେ ପନ୍ଦର ଶିଲିଂ ନ ଦେଇ ଖସିଗଲା ?

ରାସ୍ତାକୁ ଆସି ସେ ଟିମୋଲସ୍‌କୁ ଏଣେତେଣେ ଖୋଜିଲା । କିନ୍ତୁ ତାର ପତ୍ତା ମିଳିଲା ନାହିଁ । ସେ ନିରାଶ ହୋଇ ଘରେ ଆସି ଚୁପ୍ ହୋଇ ବସିରହିଲା ।

ତାର ସ୍ତ୍ରୀ କହିଲା, ସତରେ ଆଜ ଦିନଟା ଭୁଲିବାର ନୁହେଁ । ଅନେକ ସମୟ ପର୍ଯ୍ୟନ୍ତ ଚୁପ ରହିବାପରେ ଓବେକା କହିଲା—

ଆମେ ସମସ୍ତଙ୍କୁ ହିସାବକଲୁ, ମାତ୍ର ଗୋଟିଏ ହିସାବ କରି ପାରିଲୁ ନାହିଁ ।

ତାର ସ୍ତ୍ରୀ ପଚାରିଲା—କଣ ?

ଦାଦାଙ୍କୁ ଘୋଡ଼ା ଭଡ଼ାରେ ବସାଇ ପାରିଲୁ ନାହିଁ । ଓବେକା ଉତ୍ତର ଦେଲା ।



## ଶାନ୍ତିର ସନ୍ଧାନ

ଗ୍ରେଷ୍ଟିଆ ଗାଁଟିଏ । ସେଠାରେ ଜଣେ ବୃଦ୍ଧ ବ୍ୟକ୍ତି ବାସ କରୁଥିଲା । ତାର ନାମ କ୍ୟାନୁଟ୍ ଏକ୍‌ସଲବ୍ରୋଡ଼ । କିନ୍ତୁ ଏହାକୁ ଆମେ ଓଲଡ଼ କଟନଉଡ଼ ନାମରେ ଡାକୁଥିଲୁ । ସମଗ୍ର ଜୋଗିଲମୋନ୍ ଗ୍ରାମରେ ଏହାର କାରଣ କାହାରିକୁ ଜଣା ନ ଥିଲା । ପ୍ରକୃତରେ କଟନ୍‌ଉଡ଼ ହେଲା ଏକ ମଜବୁତ ଗଛ । ଖରାବର୍ଷା ଖୁବ୍ ସହିପାରେ । ହୁଏତ ଏହି କାରଣରୁ କ୍ୟାନ୍ୟୁଟକୁ ଏପରି ନାମକରଣ କରାଯାଇଥିଲା । ତା ବ୍ୟତୀତ ସେ ନିଜ ଘର ପର୍ଯ୍ୟନ୍ତ ପଡ଼ିଥିବା ରାସ୍ତା କଡ଼ରେ ଅନେକ କଟନ ଉଡ଼ ଗଛ ଲଗାଇଥିଲା ।

କ୍ୟାନ୍ୟୁଟର ବୟସ ଥିଲା ୭୪ ବର୍ଷ । କିନ୍ତୁ ସେ ଲଗାଇଥିବା କଟନଉଡ଼ ଗଛପରି ସେ ମଧ୍ୟ ଖୁବ୍ ହୃଷ୍ଟ ପୁଷ୍ଟ ଓ ମଜବୁତ୍ । ଅନେକ ଝଡ଼ଝଞ୍ଜା ଅତିକ୍ରମ କରି ସେ ପୋଖତ ହୋଇ ଯାଇଥିଲା । ସେ ଆସିଥିଲା ସ୍ୱିଡ଼େନରୁ । କିନ୍ତୁ ଅନେକ ଦିନଧରି ଆମେରି-

କାରେ ରହିଥିବାରୁ ସେ ପକ୍କା ଆମେରିକାନ୍ ହୋଇ ସାରିଥିଲା । ସେ କହୁଥିଲା ଆମେରିକା ହେଲା ମୋର ସ୍ୱପ୍ନର ଦେଶ । କିଶୋରାବସ୍ଥା ଓ ଯୌବନର ଦେଶ, ପିଲାଦିନେ ତା ମନରେ ବଡ଼ ଅଭିଳାଷ ଥିଲା । ବଡ଼ ହେଲେ ଜଣେ ବିଦ୍ୱାନ ହେବ, ଆମେରିକା ଆସିବା ପରେ ସେ ଗୋଟିଏ କାରଖାନାରେ ଚାକିରି କଲା, ସନ୍ଧ୍ୟା ସମୟରେ ସେ ପଢ଼ାପଢ଼ି କରୁଥିଲା । ମାତ୍ର ଅଠରବର୍ଷ ବୟସରେ ସେ ବିବାହ କରିଥିଲା ଲିନାକୁ, କିନ୍ତୁ ଏହାର ପରବର୍ତ୍ତୀ ଚାଳିଶ ବର୍ଷ ସେ ନିଜ ଜମିର ଫସଲ ସୁଝିବା ଏବଂ ସନ୍ତାନମାନଙ୍କୁ ପାଳନ କରିବାରେ ହିଁ ଲଗାଇ ଦେଇଥିଲା, ଆଜି ତାର ବୟସ ଚଉସଠୀ ହେଲାଣି ।

ସେ ସବୁ ପ୍ରକାର ଚିନ୍ତାରୁ ମୁକ୍ତ ହୋଇଛି । ତାର ସ୍ତ୍ରୀ ମରିଯାଇଥିଲା, ତାର ପୁଅମାନେ ବାହାସାହା ହୋଇ ଘରସଂସାର କରିଥିଲେ, ନିଜର ଜମିଟାକୁ ସେ ଦେଇଥିଲା ଝିଅ ଜ୍ୱାଇଁଙ୍କୁ । ବର୍ତ୍ତମାନ ତାର କିଛି ଦାୟିତ୍ୱ ନ ଥିଲା । ସେ ଥିଲା ମୁକ୍ତ ଓ ସ୍ୱାଧୀନ, ନିଜ ଜମିର କିଛି ଦୂରରେ ଥିବା ଗୋଟିଏ ଛୋଟ ପାହାଡ଼ ଉପରେ ସେ ନିଜର କୁଟୀର ନିର୍ମାଣ କରିଥିଲା, ଏଠାରେ ସେ ନିଜେ ରୋଷେଇ ବାସ କରି ଖାଉଥିଲା । ବାହାରେ ବସି ଖବର ପୋଡ଼ୁଥିଲା । ଏବଂ ଗ୍ରାମର ପୁସ୍ତକାଳୟରୁ ବହି ମଗାଇ ପଢ଼ୁଥିଲା ।

ପ୍ରଥମେ ପ୍ରଥମେ ସେ ନିଜର ପୁରୁଣା ଅଭ୍ୟାସ ଅନୁସାରେ ସବୁ କାମ କରୁଥିଲା । ଏବେ ସେ ନିଜର ଅଭ୍ୟାସ ବଦଳାଇ ଦେଇଥିଲା । ଏଣିକି ସେ ସକାଳ ସାତଟା ଆଠଟାରେ ଉଠି ନିଜର ଇଚ୍ଛା ଅନୁସାରେ ସମସ୍ତ କାର୍ଯ୍ୟ କରୁଥିଲା । ରାତିରେ ସେ ମଧ୍ୟ ବହୁ ସମୟ ପର୍ଯ୍ୟନ୍ତ ଚେଇଁ ରହୁଥିଲା ଓ ବହୁ ଦୂର ପର୍ଯ୍ୟନ୍ତ

ବୁଲିବାକୁ ଯାଉଥିଲା । ସାରାଦିନ ସେ ଅନେକ କଠିନ ପରିଶ୍ରମ କରୁଥିଲା । ତେଣୁ ରାତି ହେବାମାତ୍ରେ ଶୋଇ ପଡ଼ିବା ତାର ଅଭ୍ୟାସ । କିନ୍ତୁ ଏଣିକି ସେ ଅଭ୍ୟାସ ବଦଳାଇ ବହୁ ରାତି ହେବା ପର୍ଯ୍ୟନ୍ତ ଜାଗି ରହେ ଏବଂ ରାତିରେ ପ୍ରକୃତିର କିପରି ପରିବର୍ତ୍ତନ ହେଉଛି ତାହା ଦେଖେ । ସେ ଅନୁଭବ କଲା ଘନ ଅନ୍ଧକାରର ମଧ୍ୟ ଏକ ଅପୂର୍ବ ଶୋଭା ରହିଛି । ସେ ଏହି ରହସ୍ୟମୟ କଳାରାତିର ଆନନ୍ଦ ଉପଭୋଗ କଲା । ବେଳେବେଳେ ସେ ପଡ଼ିଆକୁ ଦୌଡ଼ିଯାଇ ନାଚି ଯାଉଥିଲା । ନିଜ କୁଟୀର ପ୍ରାଙ୍ଗଣରେ ବସି ଗଛର ଗହଳି ଭେଦ କରି ଆସୁଥିବା ପବନର ସଙ୍ଗୀତ ଶୁଣୁଥିଲା । ଅଥବା ପକ୍ଷୀମାନଙ୍କର ମନୋମୁଗ୍ଧକର କାକଳି ଉପଭୋଗ କରୁଥିଲା । ବେଳେ ବେଳେ ସେହି ଉଚ୍ଚ ପାହାଡ଼ ଉପରକୁ ଚାଲିଯାଇ ନଗ୍ନ ଧରଣୀର ଅପୂର୍ବ ଶୋଭାରାଜି ଆଡ଼କୁ ଏକଲୟରେ ଚାହିଁ ରହୁଥିଲା ।

ଏଣେ ଗ୍ରାମର ଲୋକେ ଭାବିଲେ କ୍ୟାନୁଟ୍ ପାଗଳ ହୋଇ ଯାଇଛି । ଏହି କଥା ମଧ୍ୟ ତାର କାନରେ ପଡ଼ିଲା । ଏହା ଶୁଣି ସେ ଭାବିଲା, ଏଣିକି ତାର ଅନ୍ୟ କିଛି କରିବା ଉଚିତ ।

କ୍ୟାନ୍ୟୁଟ୍ ଭାବୁଥିଲା ଯେ ମନୁଷ୍ୟ ଯେ ପର୍ଯ୍ୟନ୍ତ ବଞ୍ଚିଛି ସେପର୍ଯ୍ୟନ୍ତ କଠିନ ପରିଶ୍ରମ କରିବା ଉଚିତ । ଏହା ବ୍ୟତୀତ ତାର ଏକ ଧାରଣା ଥିଲା ଯେ, ଯେଉଁ ବହିରେ ମନନଶୀଳ ଓ ଗମ୍ଭୀର ଚିନ୍ତା ବ୍ୟାପ୍ତ କରାଯାଇଥାଏ, ତାହା ଉତ୍ତମ ବହି ।

ଅବଶ୍ୟ ସେ ଅର୍ଥଶାସ୍ତ୍ର, ଇତିହାସ ଭଳି କେତେକ ପୁସ୍ତକ ପଢେ । କିନ୍ତୁ ଅଧିକାଂଶ ସମୟ ସେ ମନୋରଞ୍ଜନ କରିବା ଭଳି ଉପନ୍ୟାସ ପଠନରେ ନିୟୋଗ କରେ । ସେହି ପୁସ୍ତକ ମାନ ପଢ଼ି କ୍ୟାନୁଟ୍ ଭାବିଲା ଯେ, ଏ ଦୁନିଆଟା ହେଲା ଏକ ସ୍ୱପ୍ନିଳ ମନୋ-

ମୁଗ୍‌ଧକର ସ୍ଥାନ । ବାସ୍ତବିକ ଏପରି ଏକ ରଙ୍ଗୀନ୍ ଦୁନିଆକୁ ହିଁ ସେ ଖୋଜୁଥିଲା ।

କ୍ୟାନୁଟ୍ ଉପନ୍ୟାସରେ କଲେଜର ଶିକ୍ଷାର୍ଥୀମାନଙ୍କ ବିଷୟ ପଢି ଭାବିଲା ସେ ମଧ୍ୟ କଲେଜ ଯିବ । ସେ ଜୀବନରେ ଯେଉଁ ସ୍ୱପ୍ନ ଦେଖି ଆସିଛି ସେ ସ୍ୱପ୍ନକୁ ସଫଳ ନ କରିବ କାହିଁକି ?

କିନ୍ତୁ ସକାଳୁ ଉଠି ସେ ଏ ବିଷୟରେ ଭାବିଲା କଲେଜରେ ସାଧାରଣତଃ ତରୁଣ ତରୁଣୀମାନେ ଅଧ୍ୟୟନ କରିଥାନ୍ତି । ସେମାନଙ୍କ ସହ ବସିବା ଉଠିବା ଲଜ୍ଜାକର ହେବନାହିଁ ତ ? କିନ୍ତୁ ସେ ଭାବିଲା ତା ମନରେ ଜ୍ଞାନ ଅର୍ଜନର ଅଦମ୍ୟ ପିପାସା ଭରି ରହିଛି । ଏଣୁ ସେ ନିଜର ବାର୍ଦ୍ଧକ୍ୟ ଭୁଲିଗଲା ଏବଂ କଲେଜ ଯିବାପାଇଁ ପ୍ରସ୍ତୁତ ହେଲା । ଏହାର ଅଳ୍ପଦିନ ପରେ ସେ ବିଶ୍ୱ-ବିଦ୍ୟାଳୟର ଗୋଟିଏ ଛାତ୍ର ହେଲା ।

କ୍ୟାନୁଟ୍ ଆଦର୍ଶବାଦୀ ଥିଲା, ସେ ବୋକା ନ ଥିଲା, ସ୍କୁଲ ବିଶ୍ୱ ବିଦ୍ୟାଳୟରେ ଯୋଗଦେବାର କିଛିଦିନ ପରେ ସେ ଜାଣି ପାରିଲା ସେ ଗୋଟିଏ ଭୁଲ୍ କରି ପକାଇଛି । ସେ ଭାବିଥିଲା ଯେ ତରୁଣ ତରୁଣୀମାନଙ୍କ ସଂସ୍ପର୍ଶରେ ଆସି ସେ ନିଜକୁ ଅଧିକ ବୁଢ଼ା ମନେ କରିବ । କିନ୍ତୁ ହେଲା ଏକ ଓଲଟା । ଅନେକ ତରୁଣଙ୍କ ତୁଳନାରେ କ୍ୟାନୁଟ୍‌ଠାରେ ଥିଲା ଅଧିକ ତାରୁଣ୍ୟ, ଯୁବକମାନଙ୍କର କାର୍ଯ୍ୟ କଣ ? ସେ ଭାବୁଥିଲା ଶତ ବାଧା ବିଘ୍ନ ସତ୍ତ୍ୱେ ସତ୍ୟର ଅନୁସନ୍ଧାନ ହିଁ ଯୁବକର ପ୍ରଧାନ ଲକ୍ଷ୍ୟ ।

କ୍ୟାନ୍ୟୁଟର ଅନେକ ସହପାଠୀ ତାକୁ ଥଟ୍ଟା କରୁ ନ ଥିଲେ । ସେମାନେ ଜାଣିଥିଲେ ଜୀବନକୁ ଅଧିକ ଭଲ ରୂପେ ବୁଝିବା ଓ ବାକି ସମୟ ତକ ସୁଖରେ କଟାଇ ଦେବା କ୍ୟାନ୍ୟୁଟର ଲକ୍ଷ ।

ଏଣୁ ସେମାନେ କ୍ୟାନ୍ଟ୍ୟୁଟକୁ ଆଦର କରୁଥିଲେ । କଲେଜରେ ଦୁଇ ପ୍ରକାର ଛାତ୍ରଙ୍କୁ କ୍ୟାନ୍ଟ୍ୟୁଟ ଦେଖୁଥିଲା, ଦଳେ ଅତି ପରିଶ୍ରମ କରି କୌଣସି ବ୍ୟକ୍ତି ବାହାର କରି ପଢ଼ାପଢ଼ି କରୁଥିଲେ । ଅନ୍ୟଦଳ କିଛି ନକରି ବାଜଆ ସମସ୍ତ ଛକ କାବ୍ୟ ଚର୍ଚ୍ଚା, ଖେଳ, କସରତ ସଙ୍ଗୀତ ଆସର ଓ ଲଗାମ ଛଡ଼ା ସ୍ୱପ୍ନ ଦେଖିବାରେ ବିତାଇ ଦେଉଥିଲେ । ଏହି ଶ୍ରେଣୀର ଛାତ୍ର ବ୍ୟକ୍ତି କରୁଥିବା ଛାତ୍ରଙ୍କ ଠାରୁ ଉତ୍କୃଷ୍ଟ ବୋଲି କ୍ୟାନ୍ଟ୍ୟୁଟ ଯାହା ଭାବୁଥିଲା ତାହା ତାର ବିଶ୍ୱାସ ଭୁଲ । ଅବଶ୍ୟ ସେ ନିଜେ ଖୁବ୍ ପରିଶ୍ରମୀ ଥିଲା । କିନ୍ତୁ ଯେଉଁ ଛାତ୍ରମାନେ କେବଳ ପଢ଼ା ନୁହେଁ ଜୀବନକୁ ଅଧିକ ଉପଭୋଗ କରିବାର ଉଦ୍ୟମ କଲେ ସେ ସେମାନଙ୍କ ପ୍ରତି ଆକୃଷ୍ଟ ହୋଇ ପଡ଼ିଲା ।

କ୍ୟାନ୍ଟ୍ୟୁଟ ଦେଖିଲା ଯେ ଯେଉଁ ଜୀବନ ଦର୍ଶରେ ସେ ଅନୁପ୍ରାଣିତ ସେ ଭଳି କୌଣସି ଯୁବକ କଲେଜରେ ନାହିଁ । ଓପେ ଯୁବକମାନେ ତାକୁ ଥଟ୍ଟା କଲେ । ଅଳ୍ପଦିନ ମଧ୍ୟରେ ସେ ବିଶ୍ୱବିଦ୍ୟାଳୟର ସମସ୍ତ ଆକର୍ଷିତା ହରାଇ ବସିଲା ।

ଗତ କିଛିଦିନ ହେଲା କ୍ୟାନ୍ଟ୍ୟୁଟ ଏକ ଯୁବକ ପ୍ରତି ଆକର୍ଷିତ ହୋଇଥିଲା । ସେ ଯୁବକଟି ଖୁବ୍ ସୁନ୍ଦର ପୋଷାକ ପିନ୍ଧି ଆସୁଥିଲା, ତାର କୋଟଗୁଡ଼ା ଖୁବ୍ ସଫା ସୁରୁଚ । ତାର ନାମ ଗିଲବର୍ଟ ଓ୍ୱାସବର୍ଣ୍ଣ । ଥରେ ଗିଲବର୍ଟ ଓ ତାର ମୁହାଁ ମୁହିଁ ଭେଟ ହେଲା ।

କ୍ୟାନ୍ଟ୍ୟୁଟ ଦେଖିଲା ଗିଲବର୍ଟ ହସୁଛି । ତା ହସରେ ରହିଛି ଜୀବନ ସୌନ୍ଦର୍ଯ୍ୟ । ଏହାକୁ ଖୋଜିବାପାଇଁ ସେ ଏ ବୟସରେ କଲେଜକୁ ଆସିଥିଲା ।

ଗିଲବର୍ଟ ତାକୁ ପଚାରିଲା - ଆଚ୍ଛା କ୍ୟାନ୍ୟୁଟ ତୁମ ସମ୍ପର୍କରେ କିଛି ଦିନ ହେଲା ଚିନ୍ତା କରୁଛି ।

—କଣ ଭାବୁଛ ମୋ ବିଷୟରେ ।

ମୁଁ ଭାବୁଛି ଆମେ ପରସ୍ପରକୁ ଅଧିକ ଜାଣିବା ଉଚିତ୍ । ଅନ୍ୟମାନେ ତ ଆମ ଦୁହିଁଙ୍କୁ ଏକା ବୋଲି ଭାବୁଛନ୍ତି । ଆମେ ସେମାନଙ୍କ ପରି ପରୀକ୍ଷା ଦେଇ ଅଧିକ ନମ୍ବର ପାଇବାକୁ ଉଦ୍ୟମ କରୁନାହୁଁ । ତେଣୁ ସେମାନେ ଭାବନ୍ତି ଆମେ ହେଲୁଁ ଏକ ନମ୍ବର ବୋକା ।

ଗିଲ୍ କିଛି ସମୟ ନୀରବ ହୋଇ ବସିବା ପରେ ନିଜ କୋଟ ପକେଟରୁ ଗୋଟିଏ ପୁସ୍ତକ ବାହାର କଲା । ଏଥିରେ "ମୁମା"ଙ୍କ ପ୍ରଣୀତ କବିତା ମାନ ଅଛି । ଗତବର୍ଷ ମୁଁ ଫ୍ରାନସ୍ ଯାଇଥିବା ବେଳେ ଏହାକୁ କିଣି ଥିଲି ।

କ୍ୟାନ୍ୟୁଟ ଏପରି ପୁସ୍ତକ ଆଗରୁ ଦେଖିନଥିଲା । ଏହା ଚମତ୍କାରରେ ବନ୍ଧେଇ ହୋଇଥିଲା । ପୁସ୍ତକଟି ଏତେ ସୁନ୍ଦର ଓ ମୂଲ୍ୟମ୍ ଥିଲା ଯେ କ୍ୟାନ୍ୟୁଟ ଭଳି ଜଣେ ଚଷା ନିଜ ହାତରେ ତାହା ଧରିବାକୁ ଡରୁଥିଲା ।

ମୁଁ ତ ଏହାକୁ ପଢ଼ି ପାରିବ ନାହିଁ । ତେବେ ମୁଁ ଯାହାସବୁ କଥା କଳ୍ପନା କରୁଥିଲି ଏହି ବହିଟିର କଥା ତା ସହିତ ଅନେକ ମିଳି ଯାଉଛି ।

କ୍ୟାନ୍ୟୁଟର କଥା ଶୁଣି ଗିଲ୍ କହିଲା—ଶୁଣ ଆଜି ହାର୍ଟ ଫର୍ଡରେ ସଙ୍ଗୀତ କାର୍ଯ୍ୟକ୍ରମ ଅଛି । ଚାଲ ଆମେ ସେଠାକୁ ଯିବା । ସନ୍ଧ୍ୟାରେ ଆମେ ଘୋଡ଼ା ଗାଡ଼ିରେ ଯିବା ।

ଉଭୟେ ଉଚ୍ଚ ଶ୍ରେଣୀର ଟିକଟ କିଣି ସଙ୍ଗୀତ କାର୍ଯ୍ୟକ୍ରମ ଶୁଣିଲେ । ଫେରିବା ପରେ ଗିଲ୍ କହିଲା ଘୋଡ଼ା ଗାଡ଼ିରେ ନ ଯାଇ ପାଦରେ ଗଲେ କିପରି ହୁଅନ୍ତା ?

ଦୁହେଁ ସେହି ଉଜ୍ଜ୍ୱଳ ଚନ୍ଦ୍ରାଲୋକରେ ଚାଲିବାକୁ ଲାଗିଲେ । ମଝିରେ ମଝିରେ ସେମାନେ ଯେଉଁ ଗଛ ମୂଳରେ ଠିଆ ହୋଇ ଯାଉଥିଲେ । ଓ ପାଗଳ ସେଉଁ ଚୋଳ ନେଉଥିଲେ, ବେଳେ-ବେଳେ ସେମାନେ ରାତିର ଉଜ୍ଜ୍ୱଳ ଜ୍ୟୋତ୍ସ୍ନାଲୋକରେ ପାହାଡ଼ ଉପରେ ଚଢ଼ିଯାଇ ଖୁବ୍ ଜୋରରେ ସେ ପାଟିକରି ଉଠୁଥିଲେ ହୋ-ହୋ-ହୋ-ହୋ ।

ଯାଉ ଯାଉ ସେମାନେ ଗୋଟିଏ କୁକୁର ଦେଖିଲେ । ତା ପଛେ ପଛେ ସେମାନେ ଅନେକ ବାଟ ଧାଇଁଗଲେ । ସାଧାରଣତ ଗିଲ କହୁଥାଏ ଓ କ୍ୟାନୁଟ ଶୁଣୁଥାଏ । ମଝିରେ ମଝିରେ କ୍ୟାନୁଟ ନିଜ ବୃଷି ଜୀବନର ଅନେକ କଥା ଶୁଣାଇ ଦେଉଥାଏ ।

ସକାଳ ପାଞ୍ଚଟା ବେଳକୁ ସେମାନେ କଲେଜରେ ପହଞ୍ଚି-ଗଲେ । ମହା ଆନନ୍ଦରେ କଲେଜ ହତା ଭିତରକୁ ଆସିଲେ, କ୍ୟାନୁଟ କହିଲା ଆଜିତ ମହା ଆନନ୍ଦ ମିଳିଲା, ମୁଁ ବର୍ତ୍ତମାନ ମହା ଆରାମରେ ଶୋଇ ଅନେକ ରଙ୍ଗୀନ୍ ସ୍ୱପ୍ନ ଦେଖିବି ।

ଗିଲ୍ ଉତ୍ତର ଦେଲା ଶୋଇବାବେଳ କଣ ହେଲଣି ? ଆମ କାର୍ଯ୍ୟତ ଶେଷ ହୋଇନାହିଁ । ବର୍ତ୍ତମାନ ଭୋକ ହେଲଣି, ତୁମେ ଏଇଠିଥାଅ । ମୁଁ ମୋ କୋଠରୀରୁ ଟଙ୍କା ନେଇ ଆସେ ତାପରେ ଖାଇବା ପିଇବାର ବନ୍ଦୋବସ୍ତ କରିବା ।

କ୍ୟାନ୍ୟୁଟ ଭଳି ବୁଢ଼ା ଯେତେବେଳେ ଗିଲ୍ ଭଳି ଯୁବକ ସହ ହାତ ଛନ୍ଦାଛନ୍ଦି ହୋଇ ଆନନ୍ଦରେ ବୁଲୁଥିଲେ ଲୋକେ ତାହା ଦେଖି ଆଶ୍ଚର୍ଯ୍ୟ ହେଉଥିଲେ । କିନ୍ତୁ ଏହି ସମୟରେ ଯେଉଁ ହୋଟେଲମାନଙ୍କରେ କବି ଓ କଳାକାରମାନେ ଏକତ୍ର ହେଉଥିଲେ ତାହା ବନ୍ଦଥିଲା, ଗିଲ୍ କହିଲା—

ଇହୁଦୀମାନଙ୍କ ମହଲ୍ଲାରେ ଲୋକେ ତ ଖୁବ୍ ସହଳ ଉଠନ୍ତି । ସେମାନେ ଉଠିପଡ଼ିବେଣି, ଚାଲ ସେଠାରେ କିଛି ଖାଦ୍ୟଦ୍ରବ୍ୟ କିଣି ନେବା ଏବଂ ନିଜ ରୁମରେ ଯାଇ ଖାଇବା ।

ଗିଲ୍ ଯେତେବେଳେ, ବିସ୍କୁଟ ଛେନା ଆଦି କିଣୁଥିଲା, କ୍ୟାନ୍ୟୁଟ ଦୋକାନରେ ଥିବା ସାଇନ୍‌ବୋର୍ଡ଼ ଗୁଡ଼ିକ ଦେଖୁଥିଲା, ବାସ୍ତବିକ ଅଳ୍ପ ସମୟରେ ସେ ଯେଉଁ ଲମ୍ବାବାଟ ଚାଲିଆସିଥିଲା ତା ମନରେ ଯେଉଁ ଅପୂର୍ବ ସନ୍ତୋଷ ଦେଖା ଦେଇଥିଲା ତାହା ସେ ମନେ ମନେ ଉପଭୋଗ କରୁଥିଲା ।

ଗିଲ୍‌ର ରୁମଟି ବେଶ ଭଲ ଭାବରେ ସଜ୍ଜିତ ହୋଇଥିଲା, କ୍ୟାନ୍ୟୁଟ ଖାଇବାବେଳେ ଏହା ଲକ୍ଷ କରିଥିଲା, ଖିଆପିଆ ସବୁ ଶେଷ ହେବାପରେ ସେମାନେ ବହୁତ ବୌଦ୍ଧିକ ବିଷୟ ଆଲୋଚନା କରିଥିଲେ, ଗିଲ୍ ପ୍ରଥମେ ରବର୍ଟଲୁଇ ଷ୍ଟିଭେନସନ୍ ଓ ଆନାତୋଲେ ଫ୍ରାନ୍ସଙ୍କ ପୁସ୍ତକରୁ କେତେକ ଅଂଶ ପଢ଼ିଲା, ତାପରେ ନିଜ ସ୍ୱରଚିତ କେତେକ କବିତା ଆବୃତ୍ତି କଲା । କ୍ୟାନ୍ୟୁଟ କବିତା ଉପଭୋଗ ତ କରୁଥିଲା । ଓ ଗିଲ୍ ଭଳି ଜଣେ ଉଚ୍ଚକୋଟିର କବିର ସଂସ୍ପର୍ଶରେ ଆସିଥିବାରୁ ତାର ଆନନ୍ଦ ଆହୁରି ବଢ଼ିଯାଇଥିଲା ।

ଧୀରେ ଧୀରେ କ୍ୟାନ୍ୟୁଟ ଆଳସ୍ୟ ଅନୁଭବ କଲା ସେ କିଛି ସମୟ ପରେ ଗିଲ୍‌ଠାରୁ ବିଦାୟ ନେଲା, ସେତେବେଳକୁ ସକାଳ-ସାଢ଼େ ଛଅଟା ବାଜିଲାଣି, ଗଲାବେଳେ ଗିଲ୍ ତାଙ୍କୁ "ମୁମା"ଙ୍କ କବିତା ପୁସ୍ତକଟି ଉପହାର ଦେଲା, କ୍ୟାନ୍ୟୁଟ ବହିଟିକୁ ହାତରେ ଧରି କହିଲା—ମୋତେ ତ ମୋର ମନଲାଖି ବନ୍ଧୁ ମିଳି ଯାଇଛି, ଏଣିକି ମୁଁ ନିସ୍ମିତ ଏହା ସହ ଦେଖାକରି ପ୍ରୀତ ହେବ ।

ଧିରେ ଧିରେ ଦିବାଲୋକ ଉଜ୍ଜ୍ୱଳ ହେଉ ଥାଏ । ଗତରାତିରେ ଯେଉଁ ସବୁ ଘଟଣା ଘଟିଗଲା ତାହା କ୍ୟାନ୍ୟୁଟର ମନେ ପଡୁଥାଏ । ଏହି ଘଟଣା ଗୁଡିକ ତାକୁ କ୍ରମେ ଅସ୍ପଷ୍ଟ ମନେ ହେଉଥାଏ । କ୍ୟାନ୍ୟୁଟ୍ ଭାବିଲା ଯେ ଯୌବନ ଓ ବାର୍ଦ୍ଧକ୍ୟ ବୋଧହୁଏ, ଅଧିକ ସମୟ ଯାଏ ଏକାଠି ରହି ପାରିବେ ନାହିଁ ।

ମୁଁ ଯଦି ପୁଣି ଥରେ ସେହି ଯୁବକ ସହ ମିଳାମିଶା କରେ ସେ ବୋଧହୁଏ ବ୍ୟସ୍ତ ଓ ବିରକ୍ତ ହୋଇଯିବ । ମୋର ଯାହା କିଛି କହିବାର ଥିଲା ତାହା ମୁଁ କହି ସାରିଛି । ଏଣିକି ମୋର ଏହି ସ୍ଥାନରୁ ଚାଲି ଯିବା ଉଚିତ୍ । ଏହି ଘଟଣାର ନୂତନତ୍ୱ ମଉଳି ଯିବା ଆଗରୁ ମୁଁ ଏଠାରୁ ପଳାଇଯିବା ଉଚିତ୍ ।

ନିଜ ରୁମକୁ ଆସି ସେ ଗିଲ ପାଖକୁ ଏକ ଚିଠି ଲେଖିଲା । ତା, ପରେ ନିଜ ଜିନିଷପତ୍ର ବାନ୍ଧି ସେଠାରୁ ଚାଲିଗଲା ।

ସନ୍ଧ୍ୟାର ଟ୍ରେନରେ ଗୋଟିଏ ବୃଦ୍ଧ ଅତି ଆନନ୍ଦ ମନରେ ବସିଥିଲା, ଝରକା ପାଖ ଏକ ସିଟରେ । ତା ଆଖିରେ ଥିଲା ଏକ ଅପୂର୍ବ ଜ୍ୟୋତି ଓ ଓଠରେ ସ୍ମିତହାସ୍ୟର ରେଖା, ସେ ହାତରେ ଧରିଥିଲା ଏକ ଫରାସୀ ଭାଷାର ପୁସ୍ତକ ।



# ଚତୁର ମେଷ ପାଳକ

ଥରେ ଗୋଟାଏ ଗଛର ଥଣ୍ଡା ଛାଇ ତଳେ ଗୋଟାଏ ମେଣ୍ଢା ଜଗୁଆଳୀ ଟୋକାଟାଏ ବସିଥିଲା । ତାର ମେଣ୍ଢା ପଲ ଗୁଡ଼ାକ କିଛି ଦୂରରେ ଚରୁଥିଲେ । ସେ ତାଙ୍କ ଉପରେ ନଜର ରଖି ବସିଥାଏ । ତା'ର କାନ୍ଧରେ ଓହଳ ଥାଏ ଗୋଟିଏ ବନ୍ଧୁକ । ତାର ନାମ ଚ୍ୟାଙ୍ଗ୍ ।

ଏତିକି ବେଳେ ଆଉ ଗୋଟାଏ ଗାଈ ରଖୁଆଳ ଟୋକା "ମାଓ" ସେଠାରେ ଆସି ପହଞ୍ଚିଲା । ଆଖପାଖରେ ସେପରି ବଡ଼ ଗଛ ଆଉ ନଥିଲା । ଛାଇରେ ଟିକିଏ ବିଶ୍ରାମ ନେବା ତାର ଇଚ୍ଛା ଥିଲା । ସେ ଗାଈମାନଙ୍କୁ ଚରାଇବା ପାଇଁ ସେଠାକୁ ଆସିଥିଲା । ତା ପାଖରେ ଥିଲା ଗୋଟାଏ ଚାବୁକ୍ ।

ସେ ଚ୍ୟାଙ୍ଗକୁ ଚାହିଁଲା । ଚ୍ୟାଙ୍ଗ ତାକୁ ପଚାରିଲା ଏ ଚାବୁକଟା କାହିଁକି ରଖିଛ ? ମାଓ ଉତ୍ତର ଦେଲା ଗାଈକୁ ପିଟିବା ପାଇଁ । କିନ୍ତୁ ଗାଈ ପ୍ରତି ଏତେ ହିଂସା କରିବା ଆଦୌ ଠିକ୍ ନୁହେଁ । —ସତେ ନା କଣ ? ତାହେଲେ ତୁମେ ଏ ଦୋନାଳୀ ବନ୍ଧୁକଟା କାହିଁକି କାନ୍ଧରେ ପକାଇଛ ? ଏହା କଣ ଅହିଂସା ବନ୍ଧୁକ । ମାଓ ଚ୍ୟାଙ୍ଗକୁ କହିଲା ।

—ନା, ଏଇଟା ଅହିଂସା ବନ୍ଧୁକ ନୁହେଁ । କିନ୍ତୁ କୌଣସି ଚୋର ଯଦି ଆସି ମୋ ମେଣ୍ଢା ଚୋରିକରି ନଏ ସେଥିପାଇଁ ମୁଁ ବନ୍ଧୁକଟା ରଖିଛି । ହେବେ ହଁ ମୁଁ ବୁଝୁଛି ବନ୍ଧୁକଟା ରଖିବା ଉଚିତ୍ ନୁହେଁ । ଚ୍ୟାଙ୍ଗ୍ କହିଲା ।

ଏହାପରେ ଚ୍ୟାଙ୍ଗ୍ ବନ୍ଧୁକଟା କାଢ଼ି ତଳେ ରଖିଦେଲା । "ମାଓ" କହିଲା—ଆଚ୍ଛା ମୁଁ ଦେଖେଁ ତୁମ ବନ୍ଧୁକଟା କିପରି । ସେ ବନ୍ଧୁକ ଉଠାଇ ଦେଖାଦେଖି କଲା । ଏତିକିବେଳେ ସେଠାରେ ଗୋଟାଏ ବାଘ ଆସୁଥିବାର ଦେଖାଗଲା । ଚ୍ୟାଙ୍ଗ୍ ବାଘକୁ ଦେଖି ଖୁବ୍ ଡରିଗଲା ଓ ସେହି ଗଛ ଉପରକୁ ଚଢ଼ିଗଲା ।

ଚ୍ୟାଙ୍ଗ୍ ଗଛ ଉପରେ ଥାଇ ସେ ପାଟିକଲା —ବନ୍ଧୁକ ଚଳାଅ ନାହିଁ । "ମାଓ" ! ବାଘ ଘାଏଲ ହୋଇ ମଣିଷମାନଙ୍କୁ ଖାଇଯିବ । କିନ୍ତୁ ଚାଙ୍ଗଆଲ ଟୋକା "ମାଓ" ଠିକ୍ ବାଘ ମୁଣ୍ଡକୁ ଲକ୍ଷ୍ୟକରି ଗୁଳି କରିଦେଲା, ଗୁଳିଟା ଠିକ୍ ବାଘ ମୁଣ୍ଡରେ ବାଜିଲା । ସେ ଗର୍ଜନକରି ସେଇଠି ପଡ଼ିଗଲା, ଓ ମରିଗଲା ।

ମେଷ ପାଳକ ଚ୍ୟାଙ୍ଗ୍ ଗଛରୁ ଓହ୍ଲାଇ ଆସିଲା, ସେ ଏହାପରେ ଅଭିଯୋଗ କଲା କାହିଁକି ବୃଥାଟାରେ ଗୁଳି ଚଳାଇଲ ?

ବୃଥାଟାରେ ? ଗୁଳି ଚଳାଇ ନଥିଲେ ବାଘଟା ମୋତେ ଖାଇ ଯାଇଥାନ୍ତା । "ମାଓ" କହିଲା ।

— ନା, ନା । ବାଘଟା ଏତେ ସହଜରେ ମଣିଷ ଖାଏନା । ସେ ହୁଏତ ଗୋଟାଏ ମେଣ୍ଢା ନେଇ ପଳାଇ ଯାଇଥାନ୍ତା । କିନ୍ତୁ ଭଗବାନଙ୍କ ଦୟା ତୁମର ଲକ୍ଷ ଠିକ୍ ହେଲା । ତା ନ ହେଲେ ବାଘଟା ତୁମକୁ ଖାଇ ଯାଇଥାନ୍ତା ।

ମେଷପାଳକ ତା ବନ୍ଧୁକଟା ଫେରାଇ ନେଲା । ଓ ସେଥିରେ ଗୁଳି ଭର୍ତ୍ତିକରି ବନ୍ଧୁକଟା ପୁଣି ଠିକ୍‌କରି ତା କାନ୍ଧରେ ଝୁଲାଇ ଦେଲା ।

ଏହାପରେ ଚ୍ୟାଙ୍ଗ ଟିକିଏ ଗମ୍ଭୀର ମୁଖ କରି କହିଲା ! ମଲା ବାଘଟାକୁ ବୋହିକରି ଗାଁ ପର୍ଯ୍ୟନ୍ତ ନେବାପାଇଁ ତୁମ ଗାଡ଼ିଟା ମୋର ଖୁବ୍ ଆବଶ୍ୟକ ।

ମାନେ ?

ମାନେ କଣ ବୁଝି ପାରୁନା ? ତାହାର ଅର୍ଥ ବାଘଟାକୁ ଗାଡ଼ି ପିଠିର ଉପରେ ଲଦି ମୋତେ ନେଇଯିବାକୁ ହେବ ।

— କିନ୍ତୁ ବାଘଟାକୁତ ମୁଁ ମାରିଛି । ତୁମେ ତାକୁ କାହିଁକି ନେବ ?

—ତୁମେ ମାରିପାରି ଥାଅ । କିନ୍ତୁ ମୋର ବନ୍ଧୁକରେ ତୁମେ ତାକୁ ମାରିଛ । ତେଣୁ ମଲା ବାଘଟାର ମାଲିକାନା ମୋର । ଏ ବିଷୟରେ ତୁମର କୌଣସି ଆପତ୍ତି କରିବା ଅନୁଚିତ୍ । ଯଦି ଏ ମାମଲାରେ ତୁମେ କିଛି ଗୋଳମାଳ କର ତେବେ ମୁଁ ତୁମ ଉପରେ ଗୁଳି ଚଳାଇ ଦେବି ।



## ଦୋଷୀ କିଏ ?

ମହମ୍ମଦ ଅଲ୍ଲୀ ଗାଁ ଥିଲେ ଖୁବ୍ ଧନୀ । ଗହମ, ବାଜରା, ଏବଂ ପଶୁ ଖାଦ୍ୟ ଆଦିରେ ତାଙ୍କର ବ୍ୟବସାୟ ଖୁବ୍ ଚାଲୁଥିଲା । କିନ୍ତୁ ଧନବାନ ହେଲେ ସୁଦ୍ଧା ଅର୍ଥର ଅପବ୍ୟୟ ସେ କଦାପି କରୁ ନ ଥିଲେ । ସେ ବୁଝି ବିଚାରି କାଣିକି କୁଣ୍ଟି ହିସାବ ଖର୍ଚ୍ଚ କରୁଥିଲା । ତା ମତରେ ଧନୀ ରହିବାର ଅର୍ଥ ହେଲା ଟଙ୍କା ଜମା କରିବା ।

ଦିନେ ମହମ୍ମଦର ସ୍ତ୍ରୀ କହିଲା—ପୁଅର ଜୋତାଟା ଫାଟି ଗଲାଣି । ତିଳେ ନୂଆ ଜୋତା ତା ପାଇଁ କିଣି ଦେବ ନାହିଁ ?

—ଆରେ ବେଗମ୍ । ଟିକଏ ଖୋଦାଙ୍କ ନାମ ତ ନିଅ । ମୁଁ ଯେବେ ସାନ ଥିଲି, ମୋ ବାପା ପ୍ରତି ତିନ ବର୍ଷରେ ମୋପାଇଁ ଜୋତା କିଣି ଦେଉଥିଲେ । ସେଥିରେ ବି ମା' ରାଗି ଯାଉଥିଲେ । ସେ କହୁଥିଲେ ଯେ ଯେତେବେଳେ ସେ ଶ୍ରେଷ୍ଠ ପିଲା ଥିଲେ ତାଙ୍କ ଜେଜେ ପାଞ୍ଚସାତ ବର୍ଷ ପରେ ନୂଆ ଜୋତା ଦେଉଥିଲେ । କଣ ଏବେ କିଛି ବୁଝିଲ ? ମହମ୍ମଦ ଖାଁ ସାହେବ୍ ଗରମ ଗରମ ଦି'ପଦ ଶୁଣାଇ ଦେଲେ ନିଜ ସ୍ତ୍ରୀଙ୍କୁ ।

ତୁମେ ତ ବୃଥାରେ ମୋ ଉପରେ ରାଗୁଛ । ଜୋତାଟା କଣ ମୁଁ ଫଟେଇ ଦେଇଛି ନା କଣ ? ବେଗମ୍ ଏହିଉତ୍ତର ଦେଉଥିଲା ବେଳେ ହଠାତ୍ ପୁଅ ଉପରେ ତାଙ୍କର ନଜର ପଡ଼ିଗଲା । ରାଗ ଯାକ ସେ ତାରି ଉପରେ ମେଣ୍ଟାଇ ଦେବାପାଇଁ ଚାହିଁଲେ । କହିଲେ—ହଇରେ ଟୋକା ! ତୋ ଅଜା ଓ ମୁଁ ଯେତେବେଳେ ପିଲା ଥିଲୁ ନୂଆ ଜୋତାର ମୁହଁ ଦେଖୁ ନ ଥିଲୁ । ତୋତେ ତ ମାତ୍ର ଦୁଇମାସ ହେଲା ଜୋତା ଦିଆଯାଇଛି । ଆଗ୍ରୁ ତୁ ନୂଆଜୋତା ଦାବୀ କରି ବସିଲୁଣି ।

ପୁଅ ନିଜକୁ ବଞ୍ଚାଇବା ପାଇଁ କହିଲା ଅମ୍ମି ! ଏଥିରେ ମୋର ଦୋଷ କଣ ? ସାରା ଦେଶରେ ପ୍ରତ୍ୟେକ ଜିନିଷର ଗୁଣ ଦିନକୁ ଦିନ ଖରାପ ହେଉଛି । ଦୋକାନଦାର ମଧ୍ୟ ଦିନକୁ ଦିନ ଖରାପ କିସମର ଜିନିଷ କିଣିଥିଲା । ତାହା ଘଟିଆ କିସମର ବୋଲି ଜଣା ଯାଉଛି । ଅଳ୍ପଦିନ ମଧ୍ୟରେ ତ ତାହା ଛିଣ୍ଡି ଯିବାର୍ କଥା । ଏଥିରେ ମୋତେ କାହିଁକି ଦାୟୀ କରାଯାଉଛି ?

ପୁଅ ବନେଇ ଚୁନେଇ କଥାଟା କହିବାରୁ ମା ବେଶ୍ ବୁଝି-ଗଲେ । ବାସ୍ତବିକ ପିଲାର ତ କିଛି ଦୋଷ ନାହିଁ । ଦୋଷ ହେଲା ଦୋକାନୀଙ୍କର । ଏଣୁ ସେ ସିଧା, ପୁଅକୁ ଧରି ଦୋକାନୀ ପାଖକୁ ଗ୍ଲଲେ । ଦୋକାନୀ ସେ ଗରମ୍ ଗରମ୍ ଅଭିଯୋଗ ଶୁଣାଇ ଦେଲେ ।

ଦୋକାନୀର ମଧ୍ୟ ଅନେକ କଥା କହିବାର ଥିଲା । ନିଜ ସପକ୍ଷରେ । ସେ କହିଲା ବଡ ମା ! କେବଳ ଆପଣ ନୁହନ୍ତି ସାରା ଦେଶର ଲୋକେ ଅଭିଯୋଗ କରୁଛନ୍ତି । ଦେଶର ଅବସ୍ଥା ଆଜି ଏପରି ହେଲାଣି ଯେ କେହି ନିଜର କୌଳିକ ପେଷାପାଇଁ ଟିକିଏ ଗର୍ବ କରୁନାହାନ୍ତି ଭଲ ମଜବୁତ ଜୋତା ତିଆରି କରୁଛନ୍ତି ବୋଲି ଦେଶର କେତେଜଣ ମୋଚୀଙ୍କର ଅଭିମାନ ଥିଲା । କିନ୍ତୁ ସେଭଳି ମୋଚୀ ଆଜି ଆଉ ନାହାନ୍ତି । ସେମାନେ ଆଜି କେବଳ ଘଟିଆ କିସମ୍‌ର ଜୋତା ଉତ୍ପାଦନ କରିବାରେ ବ୍ୟସ୍ତ । ଏଥିରେ ମୋର କଣ ଦୋଷ କହିଲେ ।

ମାଆ ଓ ପୁଅ ବେଶ୍ କଥାଟା ବୁଝିପାରି ମୁହଁ ଓହଳାଇ ଫେରି ଆସିଲେ । କିନ୍ତୁ ଦୋକାନୀ ସିଧା ଯାଇ ପହଞ୍ଚିଲା ମୋଚି ପାଖରେ । ଜୋତା ଖରାପ ପଡୁଥିବା ବିଷୟରେ ସେ ଅନେକ ଅଭିଯୋଗ ଶୁଣି ସାରିଥିଲା । ତେଣୁ ସେ ମୋଚୀକୁ ଶୁଣାଇ ଦେଲା ଏକ ଗରମା ଗରମ ଭାଷଣ ।

ମୋଚି ନୀରବରେ ତାହା ସମସ୍ତ ଶୁଣିଗଲା । କହିଲା—ଏଥିରେ ମୋର ଦୋଷ କଣ ? ଜୋତା ତିଆରି ପାଇଁ ସାରା କଞ୍ଚାମାଲ ମୋତେ ଦୁଇଗୁଣ ମୂଲ୍ୟ ଦେଇ କିଣିବାକୁ ପଡୁଛି । ଏତେ ଅଧିକ ମୂଲ୍ୟ ଦେବା ସତ୍ତ୍ୱେ ମଧ୍ୟ ମାଲମତା ସନ୍ତୋଷ ଜନକ ଭାବରେ ମିଳୁ

ନାହିଁ । ପୂର୍ବ କାଳରେ ବ୍ୟବସାୟୀମାନଙ୍କର ନିଜ ଉନ୍ନତ କିସମର ଦ୍ରବ୍ୟପାଇଁ ଗର୍ବ ଥିଲା । କିନ୍ତୁ ବର୍ତ୍ତମାନ ତ ସେ ସବୁ କିଛି ନାହିଁ । ଦେଖନ୍ତୁ ନା ଏହି ଘଟିଆ, ଧଡ଼ ଧଡ଼ିଆ କିସମର ଚମଡ଼ାରେ କଣ ଭଲ ଜୋତା ତିଆରି ହୋଇପାରେ ? ଆମକୁତ ସମସ୍ତେ କହୁଛନ୍ତି । କିନ୍ତୁ ଚମଡ଼ା ବିକ୍ରେତାକୁ କେହି କିଛି କହୁ ନାହାନ୍ତି ।

ହୋକାମାତ ଗୁଲିଗଲା । କିନ୍ତୁ ମୋଚି ସିଧା ପହଞ୍ଚିଲା ଚମଡ଼ା ବ୍ୟବସାୟୀ ପାଖରେ—ସେ ଯାଇ କହିଲା—ଆପଣଙ୍କ ଚମଡ଼ା ପାଇଁ ମୋତେ ବହୁତ ଗାଳି ଶୁଣିବାକୁ ପଡ଼ୁଛି । ଜୋତା ଯଦି ଦୁଇ ମାସରେ ଫାଟେ ତେବେ ଏଥିପାଇଁ ଦାୟୀ କିଏ ? ଆପଣ ଏତେ ଖରାପ ଚମଡ଼ା କାହିଁକି ଦେଉଛନ୍ତି ?

ବ୍ୟବସାୟୀ ଉତ୍ତର ଦେଲା—ଦେଖ ତୁମ ଭଳି ପୁରୁଣା ଗ୍ରାହକଙ୍କୁ ଅସନ୍ତୁଷ୍ଟ କରାଇବା ମୋର ଉଦ୍ଦେଶ୍ୟ ନୁହେଁ । ଭଲ ଚମଡ଼ା ପାଇଁ ମୁଁ ଅନେକ କାରଖାନା ବୁଲିଛି । କିନ୍ତୁ ଆଜି କାଲି, କେଉଁଠି ହେଲେ ଭଲ ଚମଡ଼ା ମିଳୁନାହିଁ, ହେଲେ ବ୍ୟବସାୟତ ପୁଣି ଜାରି ରଖିବାକୁ ହେବ । ତେଣୁ ଯାହା ମିଳିଲା ତାହା ଆଣି ଅବିଳମ୍ବେ ମୋଚିମାନଙ୍କୁ ଯୋଗାଇ ଦେଲି ।

ମୋଚିକୁ ବିଦାୟ ଦେଇ ବ୍ୟବସାୟୀ ଚମଡ଼ା କାରଖାନାରେ ମାଲିକ ପାଖରେ ପହଞ୍ଚିଲା, କହିଲା ଆଜ୍ଞା ମୁଁ ତ ମୋଚିମାନଙ୍କ ଅଭିଯୋଗ ଶୁଣି ଶୁଣି ବ୍ୟସ୍ତବ୍ୟସ୍ତ ହୋଇଗଲିଣି, ଆଜିକାଲି ଏତେ ନିମ୍ନ ଶ୍ରେଣୀର ଚମଡ଼ା କାହିଁକି ଉତ୍ପାଦନ କରୁଛନ୍ତି ? ଅନ୍ତତଃ ବ୍ୟବସାୟର ଓ କାରଖାନାର ସୁନାମ ତ ରକ୍ଷା କରନ୍ତୁ ।

କାରଖାନାର ମାଲିକ ବ୍ୟବସାୟୀର କଥାଗୁଡ଼ିକ ଶୁଣି ମନୋଯୋଗ ସହକାରେ ଉତ୍ତର ଦେଲା । ଦେଖନ୍ତୁ, ଏଥିରେ

ଆମର କୌଣସି ଦୋଷ ନାହିଁ । ଏଥିପାଇଁ ଦାୟୀ ହେଲେ କଣ୍ଟ୍ରାକ୍‌ଟର । ସେମାନେ ରୁଗ୍‌ଣ ଦୁର୍ବଳ ମୁର୍ଦ୍ଦାର ଭଳି ପଶୁମାନଙ୍କ ଚମଡ଼ା ଆମକୁ ଯୋଗାଇ ଦେଉଛନ୍ତି । ସେଭଳି ଚମଡ଼ାରେ କୌଣସି ଔଜଲ୍ୟ ନାହିଁ । ଏପରି ସ୍ଥଳେ ଏଥିରୁ ଭଲ ମାଲ ବାହାରିବ କିପରି ?

ବ୍ୟବସାୟୀ ଚାଲିଯିବା ପରେ କାରଖାନାର ମାଲିକ କଣ୍ଟ୍ରାକ୍‌ଟରକୁ ଡକାଇ ପଠାଇଲେ—ସମସ୍ତ ଅଭିଯୋଗ କଣ୍ଟ୍ରାକ୍‌ଟରଙ୍କୁ ଶୁଣାଇ ଦିଆଗଲା, କଣ୍ଟ୍ରାକ୍‌ଟର ଉତ୍ତର ଦେଲେ ଯେଉଁ କଂସେଇମାନଙ୍କଠାରୁ ସେ ଚମଡ଼ା କିଣିଛନ୍ତି ଏଥି ନିମନ୍ତେ ସେହିମାନେହିଁ ଦାୟୀ ।

କଣ୍ଟ୍ରାକଟର କାରଖାନାର ମାଲିକଙ୍କ ପାଖରୁ ଫେରିଲେ । ସିଧା ଗଲେ କଂସାଇ ଘରକୁ, ନିଜର ମନକଥା ତାକୁ କଡ଼ାକଡ଼ି ଶୁଣାଇ ଦେଲି—

ଏହା ଶୁଣି କଂସାଇ ଉତ୍ତର ଦେଲା । ଆଜ୍ଞା ଆପଣଙ୍କୁ ତ ଚମଡ଼ା ବିକ୍ରୀ କରିବାହିଁ ଆମର କାମ । ଆପଣଙ୍କୁ ଅସନ୍ତୁଷ୍ଟ କରିବାକୁ ଆମେ ଚାହୁଁନା । ଏ ଚମଡ଼ା ଯଦି ମୋ ଦେହର ଚମଡ଼ା ହୋଇଥାନ୍ତା ତେବେ ଏହାର ଗୁଣ ସମ୍ପର୍କରେ ଠିକ ଏ ସଚେତନ ଥାଆନ୍ତି । ଏହା ତ ହେଲା ପଶୁ ଚମଡ଼ା ମନୁଷ୍ୟର ଚରିତ୍ର ଯେପରି ରସାତଳଗାମୀ ହେଲାଣି ପଶୁମାନେ ମଧ୍ୟ ସେଥିରେ ତାଳ ମିଶାଇ ଚାଲିଛନ୍ତି ।

କଣ୍ଟ୍ରାକ୍‌ଟର ମୂଳିଗଲା । ବାସ୍ତବିକ୍ ଏତେ ଖରାପ କିସମର ଚମଡ଼ା ବିକ୍ରିକଲେ ତ ଅଳ୍ପଦିନ ମଧ୍ୟରେ ତାହାର ବଦନାମି ହୋଇଯିବ । ସେ କଂସେଇଖାନାକୁ ଯାଇ ଦେଖିଲା କଅଣ ହେବା

ପାଇଁ ଗୋଟିଏ ସୈବା ବଳଦକୁ ନିଆଯାଉଛି । ସଙ୍ଗେ ସଙ୍ଗେ ସେ ବଳଦ ପାଖକୁ ଯାଇ ପଚାରିଲି "ଆରେ ଆଜକାଲ୍ ତେବ ହୁଆ କ୍ୟା" ? ଆଗେତ ଭଲ ଚମଡ଼ା ତୋ ଦେହରୁ ମିଳୁଥିଲା । କିନ୍ତୁ ଆଜ କାଲ ତୁମର ଏତେ ଅଧୋଗତି ହେଲା କାହିଁକି ?

ବଳଦଟି ସବୁ ଶୁଣି ମୁଣ୍ଡଟାକୁ କରି କହିଲା ଆମେ ବଳଦ ଜାତିର ଏଥିରେ ଟିକିଏ ହେଲେ ଦୋଷ ନାହିଁ । ଆମ ମୁନିବଙ୍କୁ ଆମେ ଜୀବନ ଥିବା ପର୍ଯ୍ୟନ୍ତ ସେବାକଲୁଁ, ଖରା, ବର୍ଷା, ଶୀତ, କାକରରେ ହଳ ଓ ଗାଡ଼ି ଟାଣିଲୁଁ । ହାଡ଼ଭଙ୍ଗା ଖଟଣୀ ଖଟିଲୁଁ, ଆମ ମରିବା ଆଗରୁ ଯେ ସେ ଆମକୁ କଂସାଇକୁ ବିକିବ, ଆମେ ତାହା ଜାଣି ନ ଥିଲୁ । ତେବେ ଆମ ମୁର୍ଦ୍ଦାରଠାରୁ ମଧ୍ୟ ଚମଡ଼ା ଆକାରରେ ସେ କିଛି ପାଇ ଲାଭବାନ ହେଉ ତାହା ମଧ୍ୟ ଆମର ଇଚ୍ଛା । କିନ୍ତୁ ଆମେ କରିବୁ କଣ ? ଆମ ଖଟଣି ଅନୁସାରେ ଖୋରାକ ପାଇଲେ ସିନା ଦେହ ଶକ୍ତ କଣ ହେବ, ବର୍ତ୍ତମାନ ଆମକୁ ଯେଉଁ ଖାଦ୍ୟ ଦିଆଯାଉଛି ତାକୁ ଖାଦ୍ୟ ନ କହିବା ବରଂ ଭଲ ଘାସ ବୋଲି ଆମ ପାଖରେ ଯାହା ପଡ଼ୁଛି ତାହା ଘାସ ନୁହେଁ ତାହା କେତୋଟି ଶୁଖିଲା ନଡ଼ା, ଓ ଶୁଖିଲା କାଗଜ । କଂସାଇ ଚାଲିଯିବା ପରେ ଟଙ୍କା ନେବାକୁ ଆସିଥିବା ମାଲିକ ଉପରେ ବଳଦର ନଜର ପଡ଼ିଲା । ବଳଦ କହିଲା ତୁମେ ଆମ ବଳଦ ଜାତିର ବଦନାମ କାହିଁକି କରୁଛ ? ଏକତ ଆମ ଖାଦ୍ୟରେ ଭେଜାଲ ଦେଉଛ । ଦ୍ୱିତୀୟରେ ଖାଦ୍ୟର ପରିମାଣ ମଧ୍ୟ କମ୍ ଦେଉଛ । ଆମ ଦେହ ଲାଗୁ ନାହିଁ । ଭଲ ଚମଡ଼ା ଏଥିରୁ ବାହାରିବ କିପରି ? ବଜାରରେ ଭଲ ଚମଡ଼ା ଯେ ମିଳୁ ନାହିଁ । ଏଥିପାଇଁ ତୁମେ ଦାୟୀ । ଅଥଚ ଲୋକେ ଆମର ବଦନାମ କରୁଛନ୍ତି ।

ମାଲିକ କହିଲା ହେ ମୋର ପ୍ରିୟ ବଳଦ ! ତୁ ଯାହା କହୁଛୁ ସବୁଠିକ୍ । ମୁଁ ତ ଘାସ ଦାନା ଆଦି ଡିଆରି କରୁନାହିଁ । ସବୁ ଏ

ସହରର ପ୍ରସିଦ୍ଧ ବ୍ୟବସାୟୀ ମହମ୍ମଦ ଅଲୀ ଖାଁ ଠାରୁ କିଣି ଆଣୁଛି । ସେ ଏବେ ଘାସ ଓ ଦାନା ଆଦିର ମୂଲ୍ୟ ଚାରିଗୁଣ ବଢ଼ାଇ ଦେଲଣି । କେବଳ ସେତିକି ନୁହେଁ । ଏଥିରେ ସେ ଅନେକ ଭେଜାଲ ଦ୍ରବ୍ୟ ମଧ୍ୟ ମିଶାଇ ଦେଉଛି । ଏହି କାରଣରୁ ମୁଁ ତୋତେ ଭଲ ଖାଦ୍ୟ ଖାଇବାକୁ ଦେଇ ପାରୁ ନାହିଁ । ପ୍ରିୟ ବଳଦ ମୋର ! ଦୁନିଆ ବଦଳି ଗଲାଣି । ତରସ ପ୍ରତି ପୂର୍ବେ ଅଧିକ ଗୁରୁତ୍ୱ ଦିଆଯାଉଥିଲା । କିନ୍ତୁ ଏବେ ଆଉ ତାହା ନାହିଁ । ତୁ କହ ଏଣୁ ଏଥିରେ ମୋର ଦୋଷ ରହିଲା କାହିଁ ?

ବଳଦ ତ ଚୁପ୍ ରହିଲା । କିନ୍ତୁ ତାର ମାଲିକ ମହମ୍ମଦ ଖାଁଙ୍କ ନିକଟରେ ପହଞ୍ଚି କହିଲା । ଖାଁ ସାହେବ । ଏତେ ଅନ୍ୟାୟ କାହିଁକି କରୁଛନ୍ତି ? ଏକେତ ଘାସ, ଦାନା ଆଦିର ଦାମ ଚାରିଗୁଣ ବଢ଼ାଇ ଦେଲେଣି । ଦ୍ୱିତୀୟରେ ଏଥିରେ ଯଥେଷ୍ଟ ପରିମାଣରେ ଭେଜାଲ ଦ୍ରବ୍ୟ ମିଶାଉଛନ୍ତି ।

ମହମ୍ମଦ ଖାଁ ମନ ଯୋଗ ସହକାରେ ସମସ୍ତ ବିଷୟ ଶୁଣି କହିଲା ତୁମେ ଯାହା କହୁଛ ସବୁ ଠିକ୍ । କିନ୍ତୁ ଏଥିରେ ମୋର ତିଳେ ମାତ୍ର ଦୋଷ ନାହିଁ । ପ୍ରଥମେ ଆମ ପୁଅର ଜୋତା ବର୍ଷେ-କାଳ ଠିକ୍ ରହୁଥିଲା । କିନ୍ତୁ ଆଜି କାଲି ତ ମାତ୍ର ଦୁଇମାସ ମଧ୍ୟରେ ଖତମ୍ । ତାହା ଛଡ଼ା ଜୋତାର ଦାମ୍ ମଧ୍ୟ ଚାରିଗୁଣ ହେଲାଣି । କେବଳ ଜୋତା ନୁହେଁ - ଲୁଗା, ପଠା ଖାଦ୍ୟ, ଦ୍ରବ୍ୟ ଓ ନିତିଦିନିଆ ଦରକାରୀ ଜିନିଷ ସବୁ କ୍ଷେତ୍ରରେ ଏହି ବ୍ୟବସ୍ଥା । ଏପରି କୌଣସି ଜିନିଷ ପତ୍ରର ଗୁଣ ମଧ୍ୟ ହ୍ରାସ ପାଇଛି । ଏପରି ସ୍ଥଳେ ମୁଁ କରିବି କଣ ? ଅନ୍ୟମାନେ ମୋ ପ୍ରତି ଯେପରି ଆଚରଣ କରୁଛନ୍ତି । ମୁଁ ମଧ୍ୟ ସେମାନଙ୍କ ପ୍ରତି ସେହି ଆଚରଣ କରୁଛି । ମୋତେ ତ ପିଲାଙ୍କ ପେଟ ପୋଷିବାକୁ ହେବ ।

ପରଦିନ ମଧ୍ୟ ମହମ୍ମଦ ଖାଁ ପୁଣି ଜୋତା ଦୋକାନୀ ପାଖକୁ ଗଲା । ଓ ଜୋତା ଦୋକାନୀ ଗଲା ମୋଚୀ ପାଖକୁ । ଏହିପରି ପ୍ରତ୍ୟେକ ବ୍ୟକ୍ତି ଅନ୍ୟ ପାଖକୁ ଗଲେ । କିନ୍ତୁ ସମସ୍ତଙ୍କ ଠାରୁ ସମାନ ଉତ୍ତର ମିଳିଲା । ଉତ୍ତର ହେଲା ଏହି । ଏଥିରେ ମୋର ଦୋଷ ନାହିଁ । ଦୁନିଆ ବଦଳି ଗଲାଣି । ପ୍ରାଚୀନ ନୈତିକ ମୂଲ୍ୟ ଆଉ ନାହିଁ । କେହି ନିଜର ସୁନାମ ରକ୍ଷା କରିବାକୁ ଚାହୁଁନାହିଁ । ତେଣୁ ଏ କ୍ଷେତ୍ରରେ ଯଦି ଦୋଷ ଥାଏ ତେବେ ତାହା ଅନ୍ୟ ଲୋକର (ଦୁନିଆ ବାହାର) ମୋର ନୁହେଁ ।



## ଜଣେ ଥିଲା ସାହୁକାର

ଗୋଟିଏ ଯୁବକ ଥିଲା ସେ ଅତି ଗରିବ । ତାକୁ କାମ ଧନ୍ଦା କିଛି ମିଳୁନଥାଏ । ସେ ଚାକିରୀର ଅନ୍ୱେଷଣରେ ସହରରେ ପହଞ୍ଚିଲା । ସହରରେ ସେ ଖୁବ୍ ମେହନତ କରି କିଛି ଟଙ୍କା ରୋଜଗାର କଲା । ଯାହା ରୋଜଗାର କରେ ତାହାକୁ ଏକ ଘଡ଼ିରେ ପକାଇଦିଏ ।

ଦିନେ ସେ ଯୁବକଟି ଦେଖିଲା ଘଡ଼ିଟି ପୂର୍ଣ୍ଣ ହୋଇଯାଇଛି । ସେ ଭାବିଲା ଘଡ଼ିଟାକୁ ନିଜପାଖରେ ରଖିବା ନିରାପଦ ନୁହେଁ । କାଳେ ଚୋରି ହୋଇଯିବ । ସେ ସହରରେ ଜଣେ ଶୁଣିଥିବା ଧର୍ମପ୍ରାଣ ସାହୁକାରକୁ ଟଙ୍କାତକ ଜମାଦେବା ପାଇଁ ଇଚ୍ଛାକଲା ।

ସେ ସାହୁକାର ପାଖକୁ ଯାଇ ନିଜ ଅଭିପ୍ରାୟ ଜଣାଇଲା ସାହୁକାର ତାର କଥା ଶୁଣି ଖୁସି ହୋଇଗଲା । କହିଲା ତୁମର ଟଙ୍କା ତକ ନିରାପଦରେ ରହିବ । ଯେଉଁଦିନ ତୁମର ଇଛା ହେବ ସେଦିନ ଆସି ଟଙ୍କା ନେଇଯିବ ।

ଏହାପରେ ଯୁବକଟି ଆଉ କିଛି ଟଙ୍କା ମଧ୍ଯ ରୋଜଗାର କରିଥିଲା । ସେ ଟଙ୍କା ତକ ମଧ୍ଯ ସାହୁକାର ପାଖରେ ଜମା କରି-ଦେଲା । ଏହିପରି ଭାବରେ ଅନେକ ଦିନ ବିତିଗଲା, ଦିନେ ସେହି ଯୁବକଟି ଭାବିଲା ସେ ଯେ ଅନେକ ଦିନ ହେଲା ତାର ଗାଆଁ ଛାଡ଼ି ସହରକୁ ଆସିଲାଣି । ତେଣୁ ଗ୍ରାମକୁ ଫେରି ଯିବା ଉଚିତ୍ । ତେଣୁ ସେ ସେହି ଧର୍ମପ୍ରାଣ ସାହୁକାର ପାଖକୁ ଯାଇ ନିଜର ଗଚ୍ଛିତ ଟଙ୍କା ତକ ମାଗିଲା ।

କି ଟଙ୍କା ? ସାହୁକାର ଆଶ୍ଚର୍ଯ୍ୟ ହୋଇ ପଚାରିଲା ?

ଯେଉଁ ଟଙ୍କା ଆପଣଙ୍କ ପାଖରେ ମୁଁ ଜମା କରିଛି । ସେହି ଟଙ୍କା ମାଗୁଛି ।

--ଆରେ ତୁ ତ ଆଛା ଲୋକ ମୋ ପାଖରେ କି ଟଙ୍କା ଜମା କରିଛୁ ? ତୋ ମୁଣ୍ଡ ଠିକ୍ ଅଛି ତ ?

କଣ ଏତେ ଶୀଘ୍ର ସେ ସବୁକଥା ଭୁଲିଗଲେ ? ଆରେ ଏଠାରୁ ଯାଉଛୁ ନା ନାହିଁ ? ସାହୁକାର ତା ଚାକରମାନଙ୍କୁ ଡାକିଲା ଏବଂ ସେମାନଙ୍କ ଦ୍ଵାରା ଯୁବକଟିକୁ ଘରୁ ତଡ଼ି ବାହାର କରିଦେଲା ।

ଏବେ କଣ କରିବ ସେ ? ଯୁବକଟି ଏତେ ମ୍ରିୟମାଣ ହୋଇ ପଡ଼ିଥାଏ ଯେ, ତାର ପାଦ ଆଗକୁ ଚଳୁନଥାଏ । ସେ ମନେ କରୁଥାଏ ସତେ ଯେପରି ଚାରିଆଡ଼ୁ ଅନ୍ଧକାର ଘୋଟି ଆସୁଛି ।

ସେ କହିଁ କହିଁ ହୋଇ କାନ୍ଦିବାକୁ ଲାଗିଲା, ଏତିକିବେଳେ ଜଣେ ସ୍ତ୍ରୀ ଲୋକ ସେ ବାଟ ଦେଇ ଯାଉଥିଲା, ଯୁବକଟିକୁ ଦେଖି ସେ ପଚାରିଲା—କାନ୍ଦୁଛ କାହିଁକି ? କଣ ହେଲା ?

ଯୁବକଟି ତାକୁ ସମସ୍ତ କଥା ବୁଝାଇ ଦେଲା । ସ୍ତ୍ରୀ ଲୋକଟି ତାକୁ ଆଶ୍ୱାସନା ଦେଇ କହିଲା ନିରାଶ ହୋଇ କିଛି ଲାଭ ନାହିଁ, ତୁମକୁ ଟଙ୍କାତକ ମିଳିଯାଇପାରେ । ତୁମେ ମୋ ସହିତ ଆମ ଘରକୁ ଚାଲ । ଆମ ଘରେ କିଛି ଖାଇ ବିଶ୍ରାମ କର । ତା ପରେ ତୁମ ଟଙ୍କା ଫେରାଇ ଆଣିବାର କିଛି ନା କିଛି ଉପାୟ ବାହାର କରିବା ।

ଯୁବକଟି ସ୍ତ୍ରୀ ଲୋକଟି ସହ ତା ଘରକୁ ଚାଲିଲା, ଖିଆପିଆ ଶେଷ ହେବାପରେ ସ୍ତ୍ରୀ ଲୋକଟି ନିଜ ଗହଣା ବାକ୍ସଟି ବାହାର-କରି ନିଜ ସାନ ପୁଅକୁ ଡାକି କହିଲା, ଆମେ ସାହୁକାର ଘରକୁ ଯାଉଛୁ, ତୁ ଆମ ପଛେ ପଛେ ଆସ, ଆମେ ଭିତରେ କଥାବାର୍ତ୍ତା କଲାବେଳେ ତୁ ବାହାରେ କାନ ଡେରି ଠିଆ ହୋଇଥିବୁ । ମୁଁ ଏହି ଗହଣା ବାକ୍ସଟି ଖୋଲିବାର ଶବ୍ଦ ଶୁଣିବା ମାତ୍ରେ ତୁ ଭିତରକୁ ଦୌଡ଼ି ଆସି କହିବୁ—ବାପା ଫେରି ଆସିଲେଣି··· ।

ଏହାପରେ ସ୍ତ୍ରୀ ଲୋକଟିକୁ ଉକ୍ତ ଯୁବକକୁ ସାହସ ଦେଇ କହିଲା ତୁମେ ଚାଲ ସେହି ସାହୁକାର ଘରକୁ ମୋ ସହିତ । ସ୍ତ୍ରୀ ଲୋକଟି ସାହୁକାର ଘରେ ପହଞ୍ଚିବା ମାତ୍ରେ ସାହୁକାର ଖୁବ୍ ଖୁସି ହୋଇଗଲା, କହିଲା—କଣ ଭଉଣୀ ? କୁଆଡ଼େ କମିତି ଆସିଲ, ମୁଁ ତୁମର କି ସେବା କରିପାରେ ?

ଏହା ଶୁଣି ସ୍ତ୍ରୀ ଲୋକଟି ଉତ୍ତର ଦେଲା—ମୋ ସ୍ୱାମୀ କିଛି ଧନପାଇଁ ବାହାରକୁ ଯାଇଛନ୍ତି । ସେମ୍ଭି ଚାଲି ଯିବାପରେ ମତେ

ଏକୁଟିଆ ରହିବାକୁ ପଡ଼ିବ, କିନ୍ତୁ ମୋର ଭୟ ହେଉଛି, ଯେ—ମୋର ମୂଲ୍ୟବାନ ଗହଣାମାନ ଚୋରି ହୋଇ ଯାଇପାରେ, ମୁଁ ତ ରାତିରେ ଟିକିଏ ଶାନ୍ତିରେ ଶୋଇ ପାରିବି ନାହିଁ । ଏଣୁ ମୁଁ ଏହି ଗହଣା ବାକ୍ସଟି ନେଇ ଆପଣଙ୍କ ପାଖକୁ ଆସିଛି । ମୋର ସ୍ୱାମୀ ଫେରି ଆସିବା ପର୍ଯ୍ୟନ୍ତ ଆପଣ ଏହାକୁ ପାଖରେ ରଖନ୍ତୁ ।

ସାହୁକାର ଗହଣା ବାକ୍ସଟା ଦେଖି ଖୁବ୍ ଖୁସି ହୋଇଗଲା, ମୂଲ୍ୟବାନ ଗହଣାତକ ପାଇବ ବୋଲି ତାର ଆନନ୍ଦର ସୀମା ରହିଲା ନାହିଁ । କହିଲା ଦେଖ ଭଉଣୀ ତୁମ ଗହଣା ମୋ ପାଖରେ ନିରାପଦରେ ରହିବ, ତୁମ ସ୍ୱାମୀ ଯେତେବେଳେ ଫେରି ଆସିବେ ସେତେବେଳେ ଆସି ନେଇଯିବ ।

ଆପଣଙ୍କ ଉପରେ ମୋର ପୂର୍ଣ୍ଣ ବିଶ୍ୱାସ ରହିଛି । ଆପଣ–ହେଲେ ଜଣେ ଦୟାଳୁ ଧର୍ମନିଷ୍ଠ ସାହୁକାର କିନ୍ତୁ କାଳେ ଯଦି......

କାଳେ ଯଦି ? କିଛି ଚିନ୍ତାକର ନାହିଁ । ମନରୁ ସନ୍ଦେହ ଦୂର କର । ମୁଁ ହେଲି ଭଗବାନଙ୍କର ଭକ୍ତ ମୁଁ କେବେହେଲେ ତୁମ ଗହଣା ହାତପଇଠ କରିବି ନାହିଁ । ଏତିକି ବେଳେ ଉକ୍ତ ଯୁବକଟି ସେଠାରେ ପହଞ୍ଚିଗଲା—ଯୁବକର ଟଙ୍କାତକ ତ ସାହୁକାର ଦେଇନାହିଁ । ଯୁବକକୁ ଦେଖି ସାହୁକାର ମନେ ମନେ ବିରକ୍ତ ହେଲା, କିନ୍ତୁ ଏହାକୁ ସେ ପ୍ରକାଶ ନକରି କହିଲା — ଆଚ୍ଛା ତୁମର କଣ ଦରକାର ?

ଯୁବକଟି କହିଲା ଆପଣଙ୍କ ପାଖରେ ମୁଁ ଅନେକ ଟଙ୍କା ଜମା କରିଥିଲି, ମୁଁ ବର୍ତ୍ତମାନ ଗ୍ରାମକୁ ଫେରୁଛି । ମୋର ଟଙ୍କାତକ ଦରକାର, ତେଣୁ ମୁଁ ତାହା ନେବାକୁ ଚାହେଁ । ସାହୁକାର ଦେଖିଲା

ଏ ଅବସ୍ଥାରେ ଯୁବକକୁ ମନା କରିବ କିପରି ? ଯଦି ସେ ମନା କରେ ସ୍ତ୍ରୀ ଲୋକଟି ତା କଥାରେ ବିଶ୍ୱାସ କରିବ କିପରି ? ସ୍ତ୍ରୀ ଲୋକର ଗହଣା ଯୁବକର କେତୋଟି ଟଙ୍କା ଅପେକ୍ଷା ଅଧିକ ମୂଲ୍ୟବାନ୍, ସାହୁକାର ଗହଣାମାନ ହରାଇବାକୁ ଚାହୁଁ ନ ଥିଲା । ଏହା ଚିନ୍ତାକରି ସେ କହିଲା ହଁ ହଁ, ତୁମ ଟଙ୍କା ତ ମୋ ପାଖରେ ସୁରକ୍ଷିତ ଅଛି । ନେଇଯାଅ ତୁମ ଟଙ୍କା, ଏହା କହି ସେ ଟଙ୍କାତକ ଯୁବକକୁ ଫେରାଇଦେଲା । ଏହାପରେ ସାହୁକାର ସ୍ତ୍ରୀ ଲୋକଟିକୁ କହିଲା, ତୁମେ ମୋ ଉପରେ ବିଶ୍ୱାସ କରି ଗହଣାତକ ରଖିଯାଅ । ଓ ତୁମ ସ୍ୱାମୀ ଫେରିବା ମାତ୍ରେ ନେଇଯିବ ।

ସ୍ତ୍ରୀ ଲୋକଟି ଏହା ଶୁଣି ନିଜର ଗହଣା ବାକ୍ସଟି ଚିଦିହାରି ଜୋର୍‌କରି ଖୋଲି ଦେଲା । ଖୋଲିବାର ଝଣ ଝଣ ଶବ୍ଦ ଶୁଣି ତାର ସାନପୁଅ ଘର ଭିତରକୁ ଦୌଡ଼ି ଆସିଲା । ସମସ୍ତେ ତାରି ଆଡ଼କୁ ଏକ ଦୃଷ୍ଟିରେ ଅନାଇଲେ । ପୁଅ ନିକଟରୁ ବାପା ଫେରି ଆସିଲେଣି ବୋଲି ସମ୍ବାଦ ଶୁଣି ତାର ମା' ବିଶେଷ ଆନନ୍ଦ ପ୍ରକାଶ କଲା । ଓ କହିଲା ସତେ ? ତାହେଲେ ତ ମତେ ସାଥେ ସାଥେ ଘରକୁ ଫେରିଯିବାକୁ ହେବ ।

ତାପରେ ସ୍ତ୍ରୀ ଲୋକଟି ସାହୁକାରକୁ କହିଲା ଆଜ୍ଞା ମୁଁ ଆପଣଙ୍କ ସହାନୁଭୂତି ପାଇଁ ବିଶେଷ କୃତଜ୍ଞ । ମୋର ସ୍ୱାମୀ ଫେରି ଆସିଲେଣି । ଆଉ ଚୋରର ଭୟ ନାହିଁ । ଏହାକହି ସେ ବାକ୍ସଟି ନେଇ ସେଠାରୁ ଚାଲିଗଲା । ତାହାପରେ ସାହୁକାର ତାରି ଆଡ଼କୁ ମିଟି ମିଟି କରି ଚାହିଁଥିଲା ଅନେକ ବେଳଯାଏ ।



# ଚୋରର ଧରା

ଥରେ ପାରସ୍ୟ ଦେଶରେ ବିଶେଷ ଚୋରି ଉପଦ୍ରବ ଦେଖା-
ଦେଲା, ସେଠାରେ ଜଣେ ବଡ଼ ବିଖ୍ୟାତ ଚୋର ବାସ କରୁଥିଲା ।
ତାର ଦୁଇଜଣ ପୁଅଥିଲେ ଜଣେ ଚୋରବିଦ୍ୟାରେ ପୂର୍ଣ୍ଣତା ହାସଲ
କରିଥିଲା । ଅନ୍ୟଜଣେ ଟିକିଏ କମ୍ ପୂର୍ଣ୍ଣତା ହାସଲ କରିଥିଲା ।
ଥରେ ନିପୁଣ ଚୋରକୁ ତାର ବାପା କହିଲା—"ଆଚ୍ଛା ତୁ ତ ସବୁ
ଶିଖିଗଲୁଣି, ଏଥର ତୋ ବିଦ୍ୟାର କିଛି ଅଦ୍ଭୁତ ନମୁନା
ମତେ ଦେଖା । ଚୋର ଏହା କହିବାରୁ ତା'ର ବଡ଼ପୁଅ କହିଲା
ବାପା କାଲି ଆପଣ ଏହାର ଫଳାଫଳ ଜାଣିପାରିବେ । ଏହାକହି
ସେ ରାଜ୍ୟସାରା ଯାଇ ପ୍ରଚାର କଲା ଯେ ଆଜି ରାତିରେ
ସହରରେ ଗୋଟାଏ ବଡ଼ଧରଣର ଚୋରିହେବ । ଏହିକଥା
ରାଜାଙ୍କ କାନରେ ବାଜିଲା । ସେ ଚୋର ଧରିବାପାଇଁ ସମସ୍ତ
ଉଦ୍ୟମ କଲେ । ଏ ଖବର ଚୋରର କାନରେ ପଡ଼ିଲା । ସେ
ରାଜାଙ୍କୁ ଅପମାନ ଦେବା ଉଦ୍ଦେଶ୍ୟରେ ଏକ ଯୋଜନା ସ୍ଥିରକଲା ।

ଏହାପରେ ସେ ହାଟକୁ ଯାଇ ଜଳଖିଆ ଦୋକାନର ସମସ୍ତ
ଦରକାରୀ ଜିନିଷ ଓ ପାନ ଗୁଆ ତମାଖୁ ପ୍ରଭୃତି କିଣି ଆଣିଲା ।
ରାତି ହେଲା । ସେ ମଧ୍ୟ ରାତିରେ ସହରର ଉପକଣ୍ଠରେ ରାଜପଥ
ପାର୍ଶ୍ୱରେ ଖଣ୍ଡେ ଛୋଟ ଦୋକାନ ଖୋଲିଦେଲା, ଚୋରଟା ଖୁବ୍
ଚତୁର ବୋଲି ରଜା ଜାଣିଥିଲେ । ଏଣୁ ସେ ତାହାକୁ ଧରିବାପାଇଁ
ଏକ ସୁନ୍ଦର କଳ୍ପିତ ଯୋଜନା କରି ସହର ସାରା ପ୍ରହରୀ ମୁତୟନ
କରିଥିଲେ । ରାଜ ରାସ୍ତାରେ ବୁଲିଆଡ଼େ ଛଦ୍ମବେଶରେ ଅନେକ

ଅନେକ ପ୍ରହରୀଥିଲେ । ସ୍ୱୟଂ ରାଜା ସହରର ବିଭିନ୍ନ ସ୍ଥାନ ବୁଲି ତଦାରଖ କରୁଥିଲେ । ସମସ୍ତ କାର୍ଯ୍ୟ ସୁରୁଖୁରୁ ରୂପେ ଚାଲିଥିବାର ଦେଖି ସେ ରାଜପ୍ରାସାଦକୁ ଯିବାକୁ ବାହାରିବା ସମୟରେ ଗୋଟିଏ କ୍ଷୀଣ ଆଲୋକରେଖା ସେ ଦେଖିଲେ । ସେ ସେହି ଆଲୋକିତ ହେଉଥିବା ସ୍ଥାନରେ ପହଞ୍ଚି ଦେଖିଲେ ଯେ, ଜଣେ ବ୍ୟକ୍ତି ରାସ୍ତାକଡ଼ରେ ଗୋଟିଏ ଛୋଟ ଜଳଖିଆ ଦୋକାନ ଖୋଲି ବସିଛି । ଏତେ ରାତିରେ ଦୋକାନ ଖୋଲି ବସିବାର ତାତ୍ପର୍ଯ୍ୟ କଣ ବୋଲି ରାଜା ତାକୁ ପ୍ରଶ୍ନ କଲେ ।

ରାଜାଙ୍କୁ ସମ୍ମାନ ଦେଖାଇବା ଉଦ୍ଦେଶ୍ୟରେ ଛଦ୍ମବେଶରେ ଥିବା କୁଶଳୀ ଚୋର ବାହାରି ଆସି ଭୟ କରିବା ଭଳି ଅଭିନୟ କରି ଭୟାର୍ତ୍ତ ସ୍ୱରରେ କହିଲା ମହାଶୟ ! ସବୁଦିନେ ଏହି ସମୟରେ ମୁଁ ଏଠାରେ ଦୋକାନ ଖୋଲା ରଖେ । କେତେକ ଚୋର ପ୍ରତିଦିନ ରାତିରେ ଏଠାକୁ ଆସି ଜଳଖିଆ କରନ୍ତି । ପିକା ଟାଣନ୍ତି । ତମାଖୁ ସେବନ କରନ୍ତି । ଗଲା ଦୁ'ଦିନ ତଳେ ଜଣେ ଚୋର ମୋ ଦୋକାନରୁ ଆସି ଜଳଖିଆ ଖାଉଥିବା ବେଳେ କହୁଥିଲା ଯେ ସେ କୁଆଡ଼େ ପ୍ରଥମ ରାତିରେ ନଗରପାଳଙ୍କ ଘରୁ ଚୋରି କରିଥିଲା । ଆଜି କାଲି ରାତିରେ ସେ କୁଆଡେ ମନ୍ତ୍ରୀଙ୍କୁ ବୋକା ବନେଇ ଦେଇଛି । ସେ ଆଜି ରାତିରେ ମଧ୍ୟ ମୋ ଦୋକାନକୁ ଆସିବ । ମୋଠାରୁ ପାନ ଓ ଜଳଖିଆ ନେଇ ସେ ମୋତେ ଦଶଗୁଣ ଅଧିକ ପଇସା ଦିଏ ।

ରାଜା ଏହା ଶୁଣି ମନେ ମନେ ଚିନ୍ତା କଲେ, ଏହି ଚୋରକୁ ଦୋକାନି ମାଧ୍ୟମରେ ଧରିବା ସହଜ ହେବ । ଏହା ମଧ୍ୟ ଏକ ସୁବର୍ଣ୍ଣ ଅବସର । ଏହା ସହ ରହିବା ଆବଶ୍ୟକ । ଚୋରକୁ କପରି

ଧରିପାରିବ, ସେ ଚିନ୍ତାକଲେ । ସଙ୍ଗେ ସଙ୍ଗେ ଏକ ଉପାୟ ଚିନ୍ତାକରି ଦୋକାନୀକୁ କହିଲେ ଯଦି ତୁମେ ମୋର ପ୍ରସ୍ତାବରେ ରାଜି ହେବ, ତେବେ ତୁମକୁ ଚୋର ଦେଉଥିବା ପାଉଣାର ଶହେ ଗୁଣ ଅଧିକ ଦିଆଯିବ । କଣ ତୁମେ ରାଜି ଛ ? ରାଜାଙ୍କ ପ୍ରସ୍ତାବରେ ସମ୍ମତି ଭାବ ପ୍ରକାଶ କରିବାରେ ଚୋର ପ୍ରଥମେ କୁଣ୍ଠିତ ଭାବ ପ୍ରଦର୍ଶନ କଲା । କିଛିସମୟ ଚିନ୍ତାକରିବା ଭଙ୍ଗୀରେ ରହି କହିଲା- ଆପଣ ନିଜର ଅନୁଗାମୀ ରକ୍ଷୀମାନଙ୍କୁ ପ୍ରଥମେ ଦୂରକୁ ପଠାଇ ଦିଅନ୍ତୁ । ଏବଂ ଏଠାରେ ଏକାକୀ ମୋ ସହିତ ରହନ୍ତୁ । କାରଣ ଏତେଗୁଡ଼ିଏ ଲୋକ ଏଠାରେ ଉପସ୍ଥିତ ଥିବା ଦେଖି ହୁଏତ ସେ ଚୋର ଆଉ ଆସିବ ନାହିଁ । କାରଣ ସେ ଅତ୍ୟନ୍ତ ଚତୁର ଚୋର । ଆପଣଙ୍କର ସମସ୍ତ ପରିଶ୍ରମ ଅକାରଣ ହୋଇଯିବ । ରାଜା ଦୋକାନୀର ଏହି ପ୍ରସ୍ତାବରେ ବାସ୍ତବିକତା ଅନୁଭବ କରି ସଙ୍ଗେ ସଙ୍ଗେ ନିଜର ରକ୍ଷୀମାନଙ୍କୁ ଦୂରକୁ ଚାଲିଯିବାକୁ ଆଦେଶଦେଲେ । ରକ୍ଷୀମାନେ ନୀରବରେ ନଗର ମଧ୍ୟକୁ ଚାଲିଯାଇ ଅପେକ୍ଷା କଲେ ।

କିଛି ସମୟ ପରେ ଦୋକାନୀ ପୁଣି ଏକ ପ୍ରସ୍ତାବ ଦେଇ କହିଲା ଯେ – "ଯଦି କିଛି ମନେ ନ କରିବେ, ତେବେ ଗୋଟିଏ କଥା କହନ୍ତି ।" ରାଜା ଅଭୟ ଦେବାରୁ ଛଦ୍ମବେଶୀ ଚୋର କହିଲା — "ଆପଣଙ୍କୁ ଏ ପୋଷାକରେ ମୋ ସହିତ ଦେଖିଲେ, ଚୋରହୁଏତ ଦୂରରୁ ସନ୍ଦେହ କରି ଆଉ ହୁଏତ ଏଠାକୁ ଆସି ନ ପାରେ । ଏଣୁ ଆପଣ ପୋଷାକ ବଦଳାଇ ମୋତେ ଦିଅନ୍ତୁ ଏବଂ ଏହି ଅଖା ଭିତରେ ଲୁଚି ରହନ୍ତୁ । ଆପଣଙ୍କୁ ଲୁଚାଇବା ପାଇଁ ମୋର ଏହି କ୍ଷୁଦ୍ର ଦୋକାନରେ ଆଉ କିଛି ନ ଥିବାରୁ, ଅଖା ଭିତରେ ଲୁଚିବାକୁ ପଡ଼ିବ । କେହି ଆପଣଙ୍କୁ ଦେଖି ପାରିବେ ନାହିଁ । ମୁଁ ଅଖାର ମୁହଁ ବାନ୍ଧିଦେବି । ଯେତେବେଳେ ଚୋର ଏଠାକୁ ଆସି

ଜଳଖିଆ ଖାଇବ । ସେହି ଅବସରରେ ମୁଁ ଅଖାର ମୁହଁ ଖୋଲି ଦେବି, ଆପଣ ଏବଂ ମୁଁ ଦୁହେଁ ଚୋରକୁ ସଙ୍ଗେ ସଙ୍ଗେ ଧରି ପକାଇବା ।

ଚୋରର ଏହି ପ୍ରସ୍ତାବ ହାସ୍ୟାସ୍ପଦ ହୋଇଥିଲେ ମଧ୍ୟ ରାଜା ଚୋର ଧରିବା ନିଶାରେ ମସଗୁଲ ରହିଥିବାରୁ ସଙ୍ଗେ ସଙ୍ଗେ ରାଜି ହୋଇଗଲେ । ପ୍ରସ୍ତାବର ମନ୍ଦ ଦିଗ ବିଚାର କଲେ ନାହିଁ । ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ସେ ସଙ୍ଗେ ସଙ୍ଗେ ନିଜର ରାଜକୀୟ ପୋଷାକ ବାହାର କରିଦେଲେ । ଚୋର ପୂର୍ବରୁ ପ୍ରସ୍ତୁତ କରିଥିବା ଅଖାରେ ରାଜାକୁ ଭର୍ତ୍ତି କରି ମୁହଁ ଭଲ ଭାବରେ ବାନ୍ଧି ଦେଲା ।

ଏହାପରେ ଚୋର ହୀପଟି ଲିଭାଇ ଦେଇ ଜୋରରେ ହୁଇ-ସିଲ ବଜାଇ 'ଚୋର' ବୋଲି ସେ ଚିତ୍କାର କରିବାକୁ ଲାଗିଲା ରକ୍ଷୀଗଣ ପ୍ରଚ୍ଛ ଶବ୍ଦ କରି ଆଗେଇ ଆସିଲେ । ଏହି ଅବସରରେ ଚୋର ରାଜାଙ୍କ ପୋଷାକ ପିନ୍ଧି ସାରିଥିଲା । ରକ୍ଷୀଗଣ ପହଞ୍ଚିବାରୁ ଚୋର ଅଙ୍ଗୁଳି ନିର୍ଦ୍ଦେଶ କରି ଅଖା ବସ୍ତାକୁ ଦେଖାଇବାରୁ ସେମାନେ ସଙ୍ଗେ ସଙ୍ଗେ ପିଟିବା ଆରମ୍ଭ କରିଦେଲେ । ବସ୍ତାକୁ ଗୋଡ଼ରେ ଗୋଇଠା ମାରି ସେମାନେ ପିଟୁଥିଲେ । ଏହି ଅବସରରେ ଚୋର ସେଠାରୁ ଖସିଗଲା ।

ରାଜା ଅଖା ବସ୍ତାରେ ଥାଇ ନିଜକୁ 'ରାଜା' ବୋଲି ଚିତ୍କାର କରିବାକୁ ଲାଗିଲା । ଦୈବକ୍ରମେ ଅଖାର ମୁହଁଟି ଫିଟାଗଲା କ୍ଷତ ବିକ୍ଷତ ଅବସ୍ଥାରେ ରାଜା ସେଠାରୁ ବାହାରି ଆସିଲେ । ରକ୍ଷୀମାନେ ତାଙ୍କୁ ଚିହ୍ନି ପାରି ଭୟରେ ସ୍ଥାଣୁ ପାଲଟି ଗଲେ ରାଜାଙ୍କ ନିର୍ଦ୍ଦେଶ କ୍ରମେ ପ୍ରକୃତ ଚୋରକୁ ସଙ୍ଗେ ସଙ୍ଗେ ଚାରିଆଡ଼େ ଖୋଜା ଚାଲିଲା

ମାତ୍ର ସେ ସେତେବେଳକୁ ଅନ୍ଧକାରରେ ହଜିଯାଇଥିଲା । କେହି ତାର ସନ୍ଧାନ ପାଇ ପାରିଲେ ନାହିଁ ।

ଲଜ୍ଜ୍ୟା ଏବଂ ମନସ୍ତାପରେ ଆରକ୍ଷୀ ପରିବେଷ୍ଟିତ କୁଣ୍ଡଳାଧୀଶ୍ୱର ପ୍ରାସାଦ ଅଭିମୁଖେ ଆଗେଇ ଆସିଲେ । ପରାଜୟର ଗ୍ଲାନି ସତେ ଯେପରି ତାଙ୍କର ପଦକ୍ଷେପକୁ ମନ୍ଥର କରିଦେଇ ଥିଲା ।



# ଗୁରୁ

ଗୋଟିଏ ଗ୍ରାମରେ ଗୋଟିଏ ପିଲା ଥିଲା । ସେ ଖୁବ ଚାଲାକ, ସେ ସମୟେ ସମୟେ ଏପରି କଥାବାର୍ତ୍ତା କରୁଥିଲା, ଯାହା ଶୁଣି ତହୁଁ ବଡ଼ ଲୋକ ମଧ୍ୟ ବିସ୍ମିତ ହୋଇ ଯାଉଥିଲେ । ଏତେ ପିଲା ଦିନରୁ ଏତେ ଜ୍ଞାନ ହେଲା କିପରି ? ଈଶ୍ୱରଙ୍କ ସମ୍ପର୍କରେ ତାର ଅଗାଧ ଜ୍ଞାନ ଓ ପାଣ୍ଡିତ୍ୟ ଶୁଣିବାକୁ ସାଧୁ ତା ପାଖରେ ପହଞ୍ଚୁ ଥିଲେ ।

ଶୈଶବ ଶେଷ ହେଲା । ସେ ଯେତେବେଳେ ବଡ଼ ହୋଇଗଲା ତାର ପିତାମାତା ତାକୁ ମୁଦି ଓ ନୂଆ ପୋଷାକ ଦେଲେ । ଏହାହିଁ ଥିଲା ତାର ବଡ଼ ହେବାର ଲକ୍ଷଣ । କିନ୍ତୁ ଏଥିରେ ତାର ମନ ଲାଗିଲା ନାହିଁ । ସେ ମୁଦି ପୋଷାକ ଛାଡ଼ି ଚାଲିଲା, ଯେଉଁଠି ସେ ଈଶ୍ୱରଙ୍କ ସମ୍ପର୍କରେ ଲୋକଙ୍କୁ ଅନେକ କଥା କହିପାରିବ ।

ସେତେବେଳେ ଲୋକ ମାନଙ୍କର ପରମାତ୍ମାଙ୍କ ସମ୍ପର୍କରେ ସମ୍ୟକ୍ ଜ୍ଞାନ ନ ଥିଲା । ଅନେକ ଅନାମଧେୟ ଦେବତାଙ୍କୁ ପୂଜା କରୁଥିଲେ । ଏହି ଦେବତାଙ୍କର ନିଜର ଭକ୍ତମାନଙ୍କ ପ୍ରତି ଭଲେ ହେଲେ ସହାନୁଭୂତି ନଥିଲା । ସେ ଚାଲିଲା ପୂର୍ବ ଆଡ଼କୁ । ପାଦରେ ଜୋତା ନଥିଲା, ହାତରେ ଛତା ନଥିଲା, କମର ପଟିରେ ଚମଡ଼ାର ଗ୍ଲେଟ ମୁଣି ଓ ସୁତେଇ ଝୁଲୁଥିଲା । ସେ ଗୁଣୁ ଗୁଣୁ ହୋଇ ଗାଉ-ଥିଲା ପରମେଶ୍ୱରଙ୍କ ଗାନ । ସେ ଖୁସିଥିଲା । କାରଣ ସେ ପରମାତ୍ମାଙ୍କ ସମ୍ପର୍କରେ ଅନେକ କଥା ଜାଣିଥିଲା ।

ରାଜପଥରେ ସେ ଏକମୁହାଁ ହୋଇ ଚାଲିଥାଏ । ଅନେକ ବାଟ ଯିବାପରେ ସେ ଏଭଳି ଦେଶରେ ପହଞ୍ଚିଲା ଯେଉଁଠି ଅନେକ ନଗର ଥିଲା । ସେ ଗୋଟି ଗୋଟି କରି ଏଗାରଟି ନଗର ପରି-କ୍ରମା କଲା । ଏଥି ମଧ୍ୟରୁ କେତୋଟି ଥିଲା ନଦୀ ତଟରେ, କେତୋଟି ଅବାଗିର ପଥରେ । ପ୍ରତ୍ୟେକ ନଗରରୁ ସେ ଜଣେ ଲେଖାଏଁ ଶିଷ୍ୟ ପାଇଲା । ଶିଷ୍ୟମାନେ ତାକୁ ବିଶେଷ ଭକ୍ତି କରୁଥିଲେ । ସେମାନେ ତା ପଛେ ପଛେ ଚାଲିବାକୁ ଲାଗିଲେ । ପରମାତ୍ମାଙ୍କ ସମ୍ବନ୍ଧରେ ଜ୍ଞାନ ଚାରିଆଡ଼େ ବ୍ୟାପିଗଲା । ଏଥିରେ ପୂଜକମାନେ କ୍ଷୁବ୍ଧ ହେଲେ ।

କିନ୍ତୁ ଏ କିଏ ? ସେ ଏତେ କ୍ଷୁବ୍ଧ ହେଉଛି କାହିଁକି ? ତାର ଶିଷ୍ୟ ଓ ଅନୁଚରବର୍ଗଙ୍କ ସଂଖ୍ୟା ବୃଦ୍ଧି ହେଲାରୁ, ସେ ବ୍ୟଥିତ ହେଲା । ସେ ଏହାର କାରଣ ଖୋଜି ପାଉ ନ ଥିଲା ସେ ଭାବୁଥିଲା, ମୁଁ ତ ପରମାତ୍ମାଙ୍କ ଜ୍ଞାନରେ ସଦା ନିମଜ୍ଜିତ । ଏ ଜ୍ଞାନ ବି ପରମାତ୍ମା ମୋତେ ପ୍ରଦାନ କରିଛନ୍ତି, କିନ୍ତୁ ଏ କ୍ଷୋଭର କାରଣ କିଏ ? ଏକାଦଶ ନଗରେଟି ଥିଲା ଏସିଆର ଆମେରିକାରେ । ଦିନେ

ସନ୍ଧ୍ୟା ବେଳେ ସେ ଏହି ନଗରର ପାହାଡ଼ ଉପରେ ଚଢ଼ିଲା ସେଠାରେ ଗୋଟିଏ ପଥର ଉପରେ ବସିଲା ତାର ଶିଷ୍ୟମାନେ ତାର ଚାରିପଟେ ଠିଆ ହୋଇଗଲେ । ତଳେ ବସି ରହିଲେ ତାର ଅନୁଗାମୀମାନେ ।

ସେ ନିଜର ଦୁଇହାତ ଜୋଡ଼ି ସେଥିରେ ନିଜର ମୁହଁ ଢାଙ୍କି କାନ୍ଦିବାରେ ଲାଗିଲା ଏହି ଶିଷ୍ୟମାନେ ତ ମୋର ଦିନ ରାତି ସେବା କରିବାରେ ଲାଗିଛନ୍ତି । କିନ୍ତୁ ସେମାନେ ମୋର ଶତ୍ରୁ ଭଳି ଦେଖା ଯାଉଛନ୍ତି କାହିଁକି ? କାହିଁକି ମୋ ମନରେ ଭୟ ଓ ଆଶଙ୍କାର ତୋଫାନ ଉଠିଛି ? ଆତ୍ମା ତାକୁ ଉତ୍ତର ଦେଲା—"ବନ୍ଧୁ ! ପରମାତ୍ମା ନିଜ ସମ୍ପର୍କରେ ତୁମକୁ ଯେଉଁ ଜ୍ଞାନ ଦେଇଥିଲେ, ତୁମେ ତାକୁ ଅନେକଙ୍କୁ ବାଣ୍ଟି ଦେଇଛ । ଏକ ମୂଲ୍ୟବାନ ମୁକ୍ତାକୁ ଚୂରମାର କରି ଦେଇଛ । ଯେ ଜ୍ଞାନ ବଣ୍ଟନ କରେ ସେ ନିଜେହିଁ ନିଜକୁ ଲୁଟ କରେ । ନିଜର ସଞ୍ଚିତ ଧନକୁ ସେ ଚୋରମାନଙ୍କୁ ଦେଇଦିଏ ପରମାତ୍ମା କଣ ତୁମଠୁଁ ବୁଦ୍ଧିମାନ ନୁହଁନ୍ତି ? ପରମାତ୍ମାଙ୍କ ରହସ୍ୟ ଖୋଲିବାର ଅଧିକାର ତୁମକୁ ଦେଲା କିଏ ? ପୁଣି ଥରେ କ୍ରନ୍ଦନ ଧ୍ୱନି ଶୁଣାଗଲା କାରଣ ସେ ଜାଣୁଥିଲା ଆତ୍ମାର ଉତ୍ତର ସମ୍ପୂର୍ଣ୍ଣ ଠିକ୍ ସେ ଜାଣିପାରିଲା ଦିନଥିଲା ଯେବେ ପରମାତ୍ମା ତାକୁ ଭଲ ପାଉଥିଲେ କିନ୍ତୁ ସେହି ଅକାଟ୍ୟ ପ୍ରେମ ଶିଥିଳ ହୋଇଗଲା କାରଣ ଏତେ ସଂଖ୍ୟାରେ ଲୋକେ ତାକୁ ଭଲ ପାଇଲେ । ସେ ନିଜେ ନିଜକୁ କହିଲା—"ବନ୍ଦନା, ଏଣିକି ସବୁ ବନ୍ଦ୍, ମୁଁ ଆଉ ପରମାତ୍ମାଙ୍କ ସମ୍ପର୍କରେ କିଛି କହିବି ନାହିଁ ।

କିଛି ସମୟ ପରେ ତାର ଶିଷ୍ୟମାନେ ଆସି ତାକୁ ନମସ୍କାର କରି କହିଲେ—ହେ ମହାପୁରୁଷ ! ଆପଣ ହିଁ ପରମାତ୍ମାଙ୍କ ସମ୍ପର୍କରେ ସମ୍ପୂର୍ଣ୍ଣ ଜ୍ଞାନର ଅଧିକାରୀ । ଆପଣ ଆମକୁ ପରମାତ୍ମାଙ୍କ

ସମ୍ପର୍କରେ ଜ୍ଞାନାଲୋକ ପ୍ରଦାନ କରନ୍ତୁ । ସେ ଉତ୍ତର ଦେଲା—ମୁଁ ତୁମକୁ ସ୍ୱର୍ଗ ଓ ମର୍ତ୍ତ୍ୟ ବିଷୟରେ ସବୁ କହିବି କିନ୍ତୁ ପରମାତ୍ମାଙ୍କ ବିଷୟରେ କିଛି କହିବି ନାହିଁ । ଲୋକମାନେ ଏହାଶୁଣି କ୍ଷୋଭିତହୋଇ ଉଠିଲେ । ସେମାନେ କହିଲେ କଣ ! ତୁମ କଥାରେ ଆମେ ଅପଲୌକିକ ରାଜ୍ୟକୁ ଆସିବୁ ।

କେବଳ ତୁମର କଥା ଶୁଣିବାକୁ ଆଜ କଣ ତୁମେ ଏ ବିରାଟ ଜନତାଙ୍କୁ ଖାଲି ହାତରେ ଫେରାଇ ଦେବ ? ସେ ପୁଣି ଉତ୍ତର ଦେଲା—ମୁଁ ଅନେକ କଥା କହିପାରେ । କିନ୍ତୁ ପରମାତ୍ମାଙ୍କ ବିଷୟରେ କିଛି କହିବି ନାହିଁ । ଲୋକମାନେ କହିଲେ—ଦେଖ, ତୁମେ ଆମ୍ଭମାନଙ୍କୁ ମରୁଭୂମିରୁ ନେଇ ଆସିଲ । ବିନା ଖାଦ୍ୟ ପାନୀୟରେ ଆମେ ପରମାତ୍ମାଙ୍କ ବିଷୟରେ କିଛି ଜାଣିବାକୁ ଚାହୁଁ । ତୁମେ ଆମକୁ ସେହି ଜ୍ଞାନ ଦିଅ ଆମେ ତୃପ୍ତ ହୋଇ ଫେରିଯିବୁ ।

କିନ୍ତୁ ସେ ପଦେହେଲେ କଥା କହିଲା ନାହିଁ । ସେ ଜାଣିଥିଲା ଯେ, ଯଦି ସେ ବିଷୟରେ କିଛି କୁହେ ତେବେ ଯାହା ବା ତା'ର କିଛି ଧନ ଅଛି । ସେ ତାହା ହରାଇ ବସିବ, ସେ ସମ୍ପୂର୍ଣ୍ଣ ନୀରବ ରହିଲା ଶିଷ୍ୟମାନେ ବ୍ୟଥିତ ହୋଇ ଫେରଗଲେ ଅନେକ ଫେରୁ ଫେରୁ ବାଟରେ ହିଁ ପ୍ରାଣ ହରାଇଲେ । ସେ କାହା ସହିତ କଥା ନ କହି ୭ ମାସକାଳ ଚାଲିବାକୁ ଲାଗିଲା । ଶେଷରେ ସେ "ମହାନଗର ମରୁଭୂମି" ନାମକ ଜାଗାରେ ପହଞ୍ଚିଲା ସେଠାରେ ଏକ ଗୁମ୍ଫାରେ ସେ ତପସ୍ୟା କରିବାରେ ଲାଗିଲା । ଏବେବି ତା ପାଖରେ କିଛି ଜ୍ଞାନ ଅଛି । ସେ ପରମେଶ୍ୱରଙ୍କୁ ଧନ୍ୟବାଦ ଦେଲା ଦିନେ ସନ୍ଧ୍ୟାରେ ସେ ଦେଖିଲା ଜଣେ ସୁନ୍ଦର ଯୁବକ ଖାଲି ହାତରେ କେଉଁଠାକୁ

ଯାଉଅଛି । ଅନେକ ଥରରେ ଯୁବକକୁ ଭେଟିଲା । ସନ୍ଧ୍ୟାବେଳେ ସେ ଖାଲି ହାତରେ ଥାଏ ଏବଂ ସକାଳକୁ ମଣିମୁକ୍ତା ନେଇ ଫେରିଆସେ, ଯୁବକଟି ଥିଲା ଜଣେ ଡକାୟତ । ବ୍ୟବସାୟୀଙ୍କ ଦଳ ସହିତ ତା'ର ସମ୍ପର୍କ ଥିଲା, ଯେ ପ୍ରତିଦିନ ଏପରି ଲୁଟମାଲ ନେଇ ଫେରୁଥିଲା । ତାକୁ ଦେଖି ଗୁମ୍ଫାରେ ଥିବା ତପସ୍ୱୀର ଦୟା ହେଲା । ଯୁବକଟି ବିପଥଗାମୀ ହୋଇଛି । କିନ୍ତୁ ସେ କିଛି ତାକୁ କହିଲା ନାହିଁ । କାରଣ ସେ ଜାଣିଥିଲା ଯଦି ସେ ମୁହଁ ଖୋଲିବ ନିଜର ସଞ୍ଚିତ ଧନ ହରାଇ ବସିବ ।

ଦିନେ ଯୁବକଟି ମଣି ମୁକ୍ତା ନେଇ ଫେରୁଥିବା ସମୟରେ ତପସ୍ୱୀ ସାମନାରେ ଠିଆ ହୋଇଗଲା । ତାକୁ ସେ କହିଲା—ମୁଁ ଏବାଟେ ଗଲାବେଳେ ତୁମେ ମୋତେ ଏଭଳି ଅନାଉଛ କାହିଁକି ? ତୁମର ଏ ଚାହାଣି ମୋ' ହୃଦୟକୁ ବିଦ୍ଧ କରୁଛି । ଏଭଳି ଚାହାଣୀରେ ତ ମୋତେ କେହି ଅନାନ୍ତି ନାହିଁ । ତପସ୍ୱୀ କହିଲା ଏ ଚାହାଣୀ ହେଲା କରୁଣାର ଦୃଷ୍ଟି । ତୁମେ ମୋ ଆଖିରେ ଯାହା ଦେଖୁଛ । ତାହା ହେଲା କରୁଣା ତୁମ ଉପରେ ମୋର ଦୟା ହେଉଛି—ଦୟା ହେଉଛି ? ମୋ ଉପରେ ତୁମର ଏତେ ଦୟା କାହିଁକି ?

— କାରଣ ତୁମେ ପରମାତ୍ମାଙ୍କ ଜ୍ଞାନରୁ ବଞ୍ଚିତ ।

—ପରମାତ୍ମାଙ୍କ ଜ୍ଞାନ କଣ ଏତେ ମୂଲ୍ୟବାନ ?

—ଏହା ଦୁନିଆର ସବୁ ପ୍ରକାର ବହୁମୂଲ୍ୟ ବା ମଣିମୁକ୍ତାଠାରୁ ବି ଅଧିକ ମୂଲ୍ୟବାନ ।

—ତା ହେଲେ ସେ ମୂଲ୍ୟବାନ ଦ୍ରବ୍ୟ କଣ ତୁମ ପାଖକୁ ଚାହିଁକି ଆସିଲା ?

ତପସ୍ୱୀ କହିଲ—ଧନ ଥିଲା, ଯେତେବେଳେ ପରମାତ୍ମାଙ୍କ ବିଷୟରେ ସମସ୍ତ ଜ୍ଞାନ ମୋଠାରେ ଥିଲା । କିନ୍ତୁ ନିଜର ମୂର୍ଖତା ହେତୁ ମୁଁ ତାହାକୁ ଅନ୍ୟମାନଙ୍କୁ ବାଣ୍ଟି ଦେଲି । ତେବେ ବର୍ତ୍ତମାନ ମୋ ପାଖରେ ଯେତକ ଜ୍ଞାନ ରହିଛି, ତାହା ତୁମ ମଣିମୁକ୍ତାଠାରୁ ଯଥେଷ୍ଟ ଅଧିକ ମୂଲ୍ୟବାନ ।

ଏହା ଶୁଣିବା ମାତ୍ରେ ଯୁବକଟି ନିଜର ମଣିମୁକ୍ତା ଫୋପାଡ଼ି ଦେଲା । ଏହାପରେ ହଠାତ୍ ଏକ ଶାଣିତ ଅସି ଧରି ତପସ୍ୱୀକୁ ଧମକାଇ କହିଲା—ଶୀଘ୍ର ବାହାର କର, ତୋର ସେହି ମୂଲ୍ୟବାନ ଜ୍ଞାନକୁ । ନଚେତ ତୋ ମୁଣ୍ଡ କାଟି ଦେବି । ତୋ ପାଖରେ ଯଦି ମୋର ମଣିମୁକ୍ତାଠାରୁ ଅଧିକ ଧନ ଅଛି । ତେବେ ମୁଁ ତୋତେ ନ ମାରିବି କାହିଁକି ?

ଏହା ଶୁଣି ତପସ୍ୱୀ କହିଲା—ଭଲ କଥା । ମୁଁ ପରମାତ୍ମାଙ୍କ ଜ୍ଞାନ ହରାଇ ବସିବା ଅପେକ୍ଷା, ସେହି ଜ୍ଞାନର ଅଧିକାରୀ ହୋଇ ମରିବାକୁ ପସନ୍ଦ କରେ । ତାହେଲେ ମୁଁ ସିଧାସଳଖ ଈଶ୍ୱରଙ୍କ ସ୍ୱର୍ଗକୁ ଯାଇ ପାରିବି । ମୋତେ ମାରିବାକୁ ଚାହିଁଲେ ତ ମାରିଦିଅ । କିନ୍ତୁ ପରମାତ୍ମାଙ୍କ ସମ୍ପର୍କୀୟ ଜ୍ଞାନ ମୁଁ କଦାପି ବିତରଣ କରିବି ନାହିଁ । ଯୁବକଟି ଏହାପରେ ବହୁତ ଅନୁରୋଧ କଲା, କିନ୍ତୁ ତପସ୍ୱୀ ମାନିଲା ନାହିଁ । ଶେଷରେ ଯୁବକ କହିଲା, ଆଚ୍ଛା ହେଉ ମୁଁ ଯାଉଛି ସପ୍ତପାପର ନଗରୀକୁ । ଏଠାରୁ ସେହି ସ୍ଥାନ ସାତ ଦିନର ରାସ୍ତା । ସେଠାରେ ମୋ ମଣିମୁକ୍ତା ବଦଳରେ ମୋତେ ସବୁପ୍ରକାର ଆନନ୍ଦ ଓ ସୁଖ ମିଳିବ । ଏହା କହି ସେ ନିଜର ମଣିମୁକ୍ତା ଗୋଟାଇ ନେଇ ଚାଲିଗଲା ।

ଯୁବକଟି ଚାଲୁଥାଏ ଆଗେ ଆଗେ ପଛରେ ତାକୁ ତପସ୍ୱୀ ଅନୁସରଣ କରୁଥାଏ । ତିନିଦିନ ତିନିରାତି ବିତିଗଲା ତପସ୍ୱୀ

ଯୁବକକୁ ବରାବର କହୁଥାଏ--ସେହି ପାପ ନଗରୀକୁ ଯାଅ ନାହିଁ ।
ଯୁବକଟି ପଚାରିଲା – ଆଚ୍ଛା, ତୁମେ ଯଦି ପରମାତ୍ମାଙ୍କ ସମ୍ପର୍କୀୟ
ଜ୍ଞାନ ମୋତେ ବତାଇ ଦେବ, ତେବେ ମୁଁ ପାପ ନଗରକୁ ଯିବି
ନାହିଁ । କିନ୍ତୁ ତପସ୍ୱୀ ଉତ୍ତର ଦେଲା— ତୁମେ ମୋଠାରେ ଯାହା
କିଛି ଅଛି ନେଇପାର । କିନ୍ତୁ ପାରମାତ୍ମିକ ଜ୍ଞାନକୁ ମୁଁ ଦେଇ
ନପାରେ ଶେଷରେ ସେମାନେ ସପ୍ତପାପ ନଗରୀର ଲାଲ ଫାଟକରେ
ପହଞ୍ଚିଗଲେ । ନଗରୀ ଭିତରୁ କେବଳ ଖିଲ ଖିଲ ହସର ଆବାଜ
ଆସୁ ଥାଏ । ଯୁବକଟି ମଧ୍ୟ ହସିବାକୁ ଲାଗିଲା —ଏବଂ ଫାଟକର
କବାଟର କଡ଼ା ହଲାଇ ଆବାଜ ସୃଷ୍ଟି କଲା—ଠକ୍ ଠକ୍
ଠକ୍……

ତପସ୍ୱୀ ଦୌଡ଼ି ଆସି ତାକୁ ରୋକି କହିଲା ହାତ ଦେଖାଅ ।
ତୁମ ବ୍ୟାଗ ଖୋଲ, ତୁମ କାନକୁ ମୋ ଓଠ ପାଖରେ ଲଗାଇ
ଦିଅ । ମୋ ପାଖରେ ଯାହାବା ପାରମାତ୍ମିକ ଜ୍ଞାନ ରହିଛି, ମୁଁ ସବୁ
ତୁମକୁ ଦେଇ ଦେବି··· ।

ଯୁବକଟି ଠିଆ ହୋଇ ରହିଲା ।

ପରମାତ୍ମାଙ୍କ ସମ୍ପର୍କରେ ତା' ପାଖରେ ଯାହା ବା ଜ୍ଞାନ ଥିଲା ।
ସବୁ ଦେଇ ସାରିଲା ପରେ ତପସ୍ୱୀ ଟଳି ପଡ଼ି କହିଁ କହିଁ ହୋଇ
କାନ୍ଦିବାକୁ ଲାଗିଲା । ମନେ ହେଲା ସତେ ଯେପରି କେଉଁଠୁ ଅନ୍ଧ-
କାର ଘୋଟି ଆସୁଛି । କ୍ରମେ ସେହି ଅନ୍ଧକାର ଭିତରେ ସେହି
ଯୁବକ ଓ ସପ୍ତପାପ ନଗରୀଟା ଲୀନ ହୋଇ ଗଲା । ସେ ଅନ୍ଧକାରର
ଉତ୍ତାଳ ତରଙ୍ଗରେ କିଛି ଦେଖି ପାରୁ ନାହିଁ । ଏତିକି ବେଳେ
ମନେ ହେଲା କେହି ତାକୁ ସ୍ପର୍ଶ କରୁଛି । ଯାହାର ପାଦ ଶିତଳ
ପରି ମସୃଣ ଏବଂ କେଶ ଉନ୍ନତ ପଶମ ପରି ନରମ ସେ ତପସ୍ୱୀକୁ

ଉପରକୁ ଉଠାଇ କହିଲା—ଏପର୍ଯ୍ୟନ୍ତ ତୁମେ ପରମାତ୍ମାଙ୍କ ସମ୍ପୂର୍ଣ୍ଣ ଜ୍ଞାନ ପାଇଥିଲ, ଏଣିକି ତୁମେ ପାଇଲ ପରମାତ୍ମାଙ୍କ ସମ୍ପୂର୍ଣ୍ଣ ପ୍ରେମ । କାନ୍ଦୁଛ କାହିଁକି ?

ସେ ମଥାରେ ଆଙ୍କିଦେଲା ଏକ ଅନାବିଲ ପ୍ରେମର ଚୁମ୍ବନ ।



## ଆକ୍ରମଣ

ଘୋଡ଼ା ଟାପୁ ସହ ଉଠି ଆସୁଥିଲା ମେଞ୍ଚାକୁ ମେଞ୍ଚା ଲାଲ ମାଟି । ଘୋଡ଼ାର ପଛେ ପଛେ ଏକ ଆଉଟୁ ଲାଲ ମାଟିର ବାଦଲ ସତେ ଯେପରି ତାର ପିଛା କରୁଥିଲା । "କ୍ଷୁଦ୍ରସ୍ଥାନ" ଗ୍ରାମ ଆଡ଼କୁ ଲୋକଟା ଘୋଡ଼ା ଛୁଟାଇ ଦେଇଥିଲା । ପ୍ରଖର ଖରାରେ ତା ମୁହଁଟା ଲାଲ ହୋଇ ଉଠିଥିଲା । ତାର ଆଖି ଭିତରେ ବିଦ୍ରୋହର ଯେଉଁ ନିଆଁ, ଜଳୁଥିଲା, ସାତ ପରସ୍ତ ଧୂଳିର କୁଣ୍ଡଳୀ ଭେଦ କରି ତାହା ଜକଜକ ଦିଶୁଥିଲା । "କ୍ଷୁଦ୍ରସ୍ଥାନ" ଗ୍ରାମରେ ସେ ପହଞ୍ଚିଗଲା । ଟୀକା ଖାଁର ଘର ଆଗରେ ସେ ଓହ୍ଲାଇ ପଡ଼ିଲା । ଘୋଡ଼ାର ପିଠି ଉପରୁ ।

ଆରେ ! ରଜାଇ ! ଆସିଗଲୁ ? କଣ ସବୁ ଭଲ ତ ? ଟୀକା ଖାଁ ଦେଖିବା ମତେ କହିଲା ।

—ଭଲ ? ସବୁଠାରୁ ଭଲକଥା ହେଲା, ଜୀବନ ଧରି ବଞ୍ଚି-ରହିଛୁ — ଆଚ୍ଛା, ଗୃହବାସ କିପରି ଚାଲିଛି ? ଫସଲ ଭଲ ହୋଇଛି ତ ?

—ଫସଲ ? ଆରେ ବାବୁ । ତିନବର୍ଷ ହେଲା ଜଣେ ଇଂରେଜ ସ୍ତ୍ରୀ ଲୋକ ମୋ ଜମିକୁ ଚାଷ କରୁଛି । ରଜାଇର ମୁଖମଣ୍ଡଳରେ ତା ଦୁର୍ଭାଗ୍ୟର ଗ୍ରୁପ ଥିଲା ସ୍ପଷ୍ଟ । ସେ ବହୁ କଷ୍ଟରେ ନିଜ କ୍ଷୋଭ ରୋକି; ଏହି କଥା ପଦକ କହି ପାରିଲା, ନାକ ପୁଡ଼ାକୁ ଫୁଲାଇ ଫୁଲାଇ, —ତା ହେଲେ କଣ ସେ ଜମିରୁ ଲାଭ ପାଉଛି ।

—ନା, ସେ ଦୁଇବର୍ଷ ହେଲା ତ କେବଳ ଲୋକସାନ ସହୁଛି । କିନ୍ତୁ ଏବେ ସେ କୂଅ ଖୋଳାଉଛି । ଏଣିକି ଜଳସେଚନ କରି ଚାଷ କରାଇବ । ଏବଂ ଲାଭବାନ ହେବ । ସେ ଖୁବ୍ ପ୍ରଭାବଶାଳୀ ମେମ ସାହେବ ବୁଝିଲ ?

- କିନ୍ତୁ ତୁମେ କ'ଣ କରିବାକୁ ଚାହଁ ?

କଣ କରିବାକୁ ଚାହେଁ ? ମୁଁ କରିବାକୁ ଚାହେଁ ଆକ୍ରମଣ, ସେହି ଇଂରେଜ ମାଇକିନା ଉପରେ ପ୍ରଚଣ୍ଡ ଆକ୍ରମଣ ।

ଟୀକା ଖାଁ ଚମକି ପଡ଼ିଲା । ତା ଆଖି ଦୁଇଟା ଉଜ୍ଜ୍ୱଳ ହୋଇ ଉଠିଲା । ତା' ଓଠ ମଧ୍ୟ ଟିକିଏ ଥରି ଉଠିଲା । ନାଁରେ ବାବା ! ସେ କହି ଉଠିଲା—ସେ ଯୁଗ ଗଲାଣି । ଇଂରେଜ ମହିଳା ଉପରେ ଆକ୍ରମଣର ଯୁଗ ଗଲାଣି । ରଜାଇ ଚାହିଁ ଥିଲା । ଟୀକା ଖାଁର ମୁହଁ ଆଡ଼କୁ । ସେ ଟିକିଏ ନୀରବରେ ତାର ହାବ ଭାବକୁ ଲକ୍ଷ୍ୟ କଲା । କହିଲା —ଏସବୁ କଣ କହୁଛ ଟୀକା ଖାଁ ? ତୁମେ ବି ମୋପରି କଅଣ ତୁର୍କ ପଠାଣ । ତୁମ ମୁହଁରେ କଣ ଏଭଳି କାପୁରୁଷ ଶୋଭା ପାଏ ? ମୁଁ ଆଜି ନିରସ୍ତ୍ର ଟୀକା ଖାଁ ! ମୁଁ ଦଉଡ଼ି ଆସିଛି, ତୁମର ସାହାଯ୍ୟ ପାଇଁ ଟୀକା ଖାଁ, ଦୀର୍ଘଶ୍ୱାସ ପକାଇ କହିଲା—ତର ତର ହୋଇ କିଛି ଲାଭ ନାହିଁ । ଧୈର୍ଯ୍ୟ ସହକାରେ କାମ କର ରଜାଇ ! —ମୁଁ ଧୈର୍ଯ୍ୟ ଫର୍ଯ୍ୟ କଣ ଜାଣେନା । ଅନେକ ଦିନରୁ ମୁଁ

ଆକ୍ରମଣର ସ୍ୱପ୍ନ ଦେଖୁ ଅଛୁ । ସାରା ରାତ ମୋତେ ନିଦ ହେଉ-ନାହିଁ । ମୁଁ ଏକପ୍ରକାର ପାଗଳ ହୋଇ ଯାଉଛୁ । ଯେ ପର୍ଯ୍ୟନ୍ତ ମୁଁ ସେହି ମେମ ଉପରେ ଆକ୍ରମଣ ନ କରୁଛୁ, ସେ ପର୍ଯ୍ୟନ୍ତ ମୋ ମନରେ ଶାନ୍ତି ନାହିଁ । ମୋତେ ସାହାଯ୍ୟ କର, ଟୀକା ଖାଁ ! ଦେଖ ମୋ ଘୋଡ଼ା କିପରି ଡାକ ଛାଡ଼ୁଛୁ ହିଃ ହିଃ ହୋଇ...... ।

ମରୁଭୂମିଟା ଦୂର ଦିଗ୍‌ବଳୟ ପର୍ଯ୍ୟନ୍ତ ଲମ୍ବିଥିଲା । ସୂର୍ଯ୍ୟ ଅସ୍ତ ହୋଇ ଆସୁଥିଲା । ତଥାପି ଉତ୍ତାପ କମିନଥିଲା । ଏକ ବଡ଼ ଛତା ତଳେ ଠିଆ ହୋଇଥିଲା ସେହି ଇଂରେଜ ସ୍ତ୍ରୀ ଲୋକଟି । ହୃଷ୍ଟପୃଷ୍ଟ ଦେଖିବାକୁ ଖୁବ ସୁନ୍ଦର । ସେହି ବିରାଟ ଛତାକୁ ଚାକରମାନେ ଧରି ଥିଲେ । ମେମଙ୍କ ସ୍ୱାମୀ ଇରାନ୍‌ର ଶାହାଙ୍କ ସୈନ୍ୟ ବାହିନୀରେ କର୍ଣ୍ଣେଲ ଥିଲା । ଛତା ତଳେ ଠିଆ ହୋଇ ଇଂରେଜ ସ୍ତ୍ରୀ ଲୋକଟି ଚାହିଁଥିଲା ଦୂର ଦିଗ୍‌ବଳୟ ଆଡ଼େ । କିଛି ସମୟ ପରେ ସେ କହିଲା- ରୁସ୍ତମ ଖାଁ ! ରୁସ୍ତମ ଖାଁ ଆସି ମୁଣ୍ଡ ନୁଆଁଇ କହିଲା—"ଆଜ୍ଞା ହଜୁର" ।

ଶୁଣ, ସେ ଦୂର ଦିଗ୍‌ବଳୟ ଆଡ଼କୁ ଆମ କ୍ଷେତ ବଢ଼ାଇବାକୁ ହେବ, ବୁଝିଲ ? —ମେମ୍ ସାହେବ ଏ ମାଟିତ ମରୁଭୂମିର ମାଟି । ଏଥିରେ ତ କିଛି ଫସଲ ହେବ ନାହିଁ । – ନା, ନା, ଏଭଳି ହତାଶିଆ କଥା କୁହନାହିଁ । ଆଉ ଗୋଟାଏ କୂଅ ଖୋଳାଇବାକୁ ପଡ଼ିବ । ଆଜ୍ଞା, ଗତବର୍ଷ ହେଲା ଆପଣ ତ ପାଣିପରି ଟଙ୍କା ଉଡ଼ାଉଛନ୍ତି । କିଛି ଫଳ ହେଉନାହିଁ । ଏଣିକି ଏକମାତ୍ର ଆଶା ହେଲା —କପା । କିନ୍ତୁ କପାର ଅବସ୍ଥା କଣ ହେବ କିଏ କହିବ ? ମେମ ସାହେବ ପୁଣି ଦେଖିଲା ସେହି ଦୂର ମରୁଭୂମି ଆଡ଼କୁ— ତାପରେ ନଜର କପାକ୍ଷେତ ଆଡ଼କୁ । ଯାହା ହଳଦିଆ ପଡ଼ିଯାଇ-ଥାଏ, କାମଳ ରୋଗ ପରି । କିନ୍ତୁ ଏଥିରେ ନିରୁତ୍ସାହିତ ନ ହୋଇ

ସେ କହିଲେ—ରୁସ୍ତମ ଖାଁ । ମୁଁ ପୁଣି ପାଞ୍ଚ ଦଶ ଟଙ୍କା ଖର୍ଚ୍ଚ କରିବି ।

ଦୂରରୁ ଶୁଭିଲା ଜୟ ଆସିବାର ଶବ୍ଦ ସମସ୍ତଙ୍କ ମୁହଁ ବୁଲିଗଲା ସେ ଆଡ଼କୁ । କୁକୁରମାନେ ମଧ୍ୟ ଭୁକିବାକୁ ଲାଗିଲେ···ଖୁସି ମନରେ ସମସ୍ତେ ଚାଲିଲେ ସେହି ଜୟ ଆଡ଼କୁ ।

× × ×

ଘନ ଘୋର ଅନ୍ଧକାର । ଏଭଳି ଏକ ରାତିରେ ଆକ୍ରମଣ କରିବା ବିଶେଷ ସୁବିଧା ଜନକ । ରାଜାଇର ଜମି ଉପରେ ସମସ୍ତେ ଓହ୍ଲାଇ ପଡ଼ିଲେ ସ୍ୱ ସ୍ୱ ଘୋଡ଼ା ପିଠିରୁ । ରାଜାଇ ବି ଓହ୍ଲାଇ ସେହି ଅନ୍ଧକାର ମଧ୍ୟରେ ନିରେଖି ନିରେଖି ଗୁହିଁଲା ନିଜ କ୍ଷେତକୁ । ସତେ ଯେପରି ସେ କ୍ଷେତଟି ତା'ର ପାଇଁ ଅନେକ ଦିନରୁ ଅପେକ୍ଷା ରତ । ଦୀର୍ଘ ଦିନର ବିଚ୍ଛେଦ ପରେ ଆଜି ହୋଇଛି ମଧୁର ମିଳନ । ରାଜାଇ ନଇଁପଡ଼ି ମୁଠାଏ ମାଟି ଉଠାଇ ଆଣିଲା । ଟିକିଏ ଘ୍ରାଣ କଲା ନିଜ ପ୍ରିୟ ମାଟିକୁ ତା'ପରେ ତାହାକୁ କ୍ଷେତରେ ଫିଙ୍ଗିଦେଲା ।

ସମସ୍ତେ ଗୁହିଁ ଥିଲେ ଅଳ୍ପ ଦୂରରେ ଥିବା ସେହି ବିରାଟ କୋଠା ଘରକୁ । ଘର ଭିତରେ ଜଳୁଥିଲା ଅନେକ ଆଲୁଅ । ସମସ୍ତଙ୍କ ଅଣ୍ଟାରେ ତରବାରି ଝୁଲୁଥିଲା । ରାଜାଇର ଆଖିରେ ସତେ ଯେପରି ନିଆଁ ଜଳୁଥିଲା । ତାର ନିଶ୍ୱାସ ଖୁବ ଜୋରରେ ବହୁଥିଲା । ସେ ଟୀକା ଖାଁର ନିର୍ଦ୍ଦେଶାନୁସାରେ ସେହି ଆଲୁଅ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି ଚିତ୍କାର କରି ଉଠିଲା ଚଢ଼ାଉ ···ଚଢ଼ାଉ···

ଘୋଡ଼ା ଚଢ଼ି ଆସିବା ସବୁ ତୁର୍କି ଲୋକମାନେ ଘେରି ଯାଇଥିଲେ ସାହେବଙ୍କ କୋଠିକୁ । କୁକୁରମାନେ ବୋଧହୁଏ ଏ ବିପଦ ସଙ୍କେତକୁ ଜାଣି ପାରିଥିଲେ । ଜଞ୍ଜିରରେ ବନ୍ଧା ହୋଇ ମଧ୍ୟ ସେମାନେ ଜୋରରେ ଭୁକୁ ଥିଲେ । ଚାରିଆଡ଼େ ଭୟର ଆତଙ୍କ ଖେଳି ଯାଇଥିଲା । କେବଳ ରୁସ୍ତମ ଖାଁ ମେମ ସାହେବଙ୍କ କବାଟ ଖଟ୍ ଖଟ୍ କରି ଚିତ୍କାର କରି ଉଠିଲା —ମେମ ସାହେବ ! ଉଠି-ପଡ଼ନ୍ତୁ । ତୁର୍କି ପଠାଣମାନେ ଆପଣଙ୍କୁ ଆକ୍ରମଣ କରିବାକୁ ଆଗେଇ ଆସିଛନ୍ତି । ଏତିକି ବେଳେ ସଜାଇ ଶର୍ଦ୍ଦିକ ଆସିଲା ରୁସ୍ତମ ଖାଁ ଆଡ଼କୁ । ତାର ତରବାରିର ମୁନ ଟାଣୁ ତା'ର ନାକ ଆଗରେ ଛୁଆଁଇ ଦେଇ କହିଲା –ଚୁପ ବେ··· । ଦରଜା ଖୋଲି ଗଲା । ବାହାରି ଆସିଲେ କର୍ଣ୍ଣେଲ ସାହେବ ଓ ମେମ ସାହେବ । ସେମାନଙ୍କ ସାମନାରେ ଠିଆ ହୋଇଥିଲେ, ଘୋଡ଼ା ସବାର ତୁର୍କି ପଠାଣ । ସଜାଇ ଓ ଟୀକା ଖାଁ । ସେହି ମେମର ମୁହଁ ଆଡ଼କୁ ଲକ୍ଷକରି ତାଚ୍ଛଲ୍ୟ ଭାବରେ ଟୀକା ଖାଁ କହି ଉଠିଲା—କୁତ୍ତି··· । କ୍ରୋଧ ଓ ଘୃଣାରେ କର୍ଣ୍ଣେଲ ସାହେବ ଓ ମେମ୍ ସାହେବ ମୁହଁ ଲାଲ ହୋଇ ଉଠିଲା । କର୍ଣ୍ଣେଲ ଚିତ୍କାର କରି ଉଠିଲେ—ବଦମାସ ଚଲା ଏଠୁ ··· । ତାଙ୍କ କଥା ଶେଷ ହେବା ଆଗରୁ ଲୋକ ଗୁଡ଼ାକ ଚିତ୍କାର କରି ଉଠିଲେ—କଦାପି ନୁହେଁ । ଏ ଆମରା ମାତୃଭୂମି । ଆମେ ଏଇଠି ଜନ୍ମ ନେଇଛୁଁ ଏଇଠି ମରିବୁ । ମେମ ସାହେବ ଆହୁରି ରାଗିଯାଇ କହିଲେ । କହିଲେ—ଆବେ ଯାଉଛୁ ନା ନାହିଁ ? ଏଠୁ ଯଦି ଏହି ମୁହୂର୍ତ୍ତରେ ନ ଯାଅ, ତେବେ ଚଙ୍ଗାଲ ଖାଁକୁ କହି ତୁମ ମୁଣ୍ଡରେ ଗୁଳି ଚଳାଇ ଦେବି । ନିଜର ନାମ ଉଚ୍ଚାରିତ ହେବା ମାତ୍ରେ ଚଙ୍ଗାଲ ଖାଁ ପାଟି କରି ଉଠିଲା—ଧିକ୍ ତୁମ ମାତୃଭୂମି । ଧିକ ତୁମ ଜୀବନ । ଚଙ୍ଗାଲ ଖାଁ ନିଜ ବନ୍ଧୁକ ଆଣିବାକୁ ଦୌଡ଼ି ଗଲା ।

ଏହାପରେ ଖସ୍ ଖର୍ ଖସ୍ ଖର୍ ଶବ୍ଦରେ ଚାଲିଛି । ସେଣ୍ଟ ମଧ୍ୟ ରାତିର ସଂଗ୍ରାମ । ମର୍ମନ୍ତୁଦ ଚିତ୍କାର ଧ୍ୱନିରେ ବାୟୁମଣ୍ଡଳ ପ୍ରତିଧ୍ୱନିତ ହେଲା । ଏ ରାତିରେ ଜଳୁଥିବା ନିଆଁ ମରୁଭୂମିର ଅନ୍ଧକାରଟିକୁ ଅନେକାଂଶରେ ଦୂର କରି ଦେଲା ।

ପରଦିନ ଠାଣ ଝଗ ବେଳକୁ ଭୁକି ପଠାଣମାନେ ଶାହାଙ୍କ ପୋଲିସ ଷ୍ଟେର ମଧ୍ୟରେ ବସିଥିଲେ ।



# ଅଜା ନାତି

ଶ୍ରାବଣ ମାସ·············

ଧାର ଶିରବଣର ଅବିରତ ବାରିଧାର ଠପ୍ ଠପ୍ ହୋଇ ପଡ଼ୁଥାଏ ପୃଥିବୀ ପୃଷ୍ଠରେ, ଗାଁ ଦାଣ୍ଡରେ ଧାର ଧାର ହୋଇ ବହି ଚାଲିଥାଏ ନଈ ନାଳର ସୁଅ, ଦୂରରୁ ଦେଖିଲେ ଯିଏ କେହି ହେଲେ ମଧ୍ୟ ଭାବିବ ଯେ ପ୍ରାୟ ବନ୍ଧ ଭାଙ୍ଗି ନଈର ପାଣି ଆସି ଗାଁରେ ପଶିଛି । ଠିକ୍ ଏତିକବେଳେ କଥା ବାର୍ତ୍ତା ହେଉଥିଲେ ନାତିଆ ଆଉ ଶିରିଆ ।

ମଧୁ ପଧାନଙ୍କର ଏ ଦୁଇ ନାତି କହିବାକୁ ଗଲେ ଦୁଷ୍ଟାମିରେ ମଶହୁର, ଗାଁ ଧୂଆଳୀରୁ ଆରମ୍ଭ କରି ଆମ୍ବ ତୋଟା ବାଲି ମାଳ ପର୍ଯ୍ୟନ୍ତ ସବୁଠାରେ ତାଙ୍କର ବଦନାମି, ଦୁଇଜଣଙ୍କର ଗୋଟିଏ ବଦ୍‌ଖୋଇ କେଉଁ ଦିନ ବେଳ ଥାଉ ଥାଉ ଗୁହାଳୀକୁ ଯିବା କେହି

ସୁଦ୍ଧା ଦେଖିନ, ସବୁ ଦିନେ ଘଣ୍ଟେ ଅଧ ଘଣ୍ଟେ ଡେରି । ସ୍କୁଲରେ ଯାଇ ପହଞ୍ଚିବା ବେଳକୁ ପିଲା ସବୁ ଯାଇ ଯେ ଯାହା ଜାଗା ଧରି ବସିଥାନ୍ତି, ସର୍ବ ପଛରେ ଜାଗା ଥାଏ ।

ଯହିଁ ସେତେବେଳେ କୌଣସି ଶିକ୍ଷକ ଶ୍ରେଣୀରେ ଥାଆନ୍ତି । ଦୁହେଁଯାକ ସୁଧାରି ଗାଣ୍ଠି ଧରି ଯାଇ ପଛରେ ବସି ଯାଆନ୍ତି, ଠିକ୍ ରୁହିଁଥାଆନ୍ତି ମାଷ୍ଟର ଜଣକ କେତେବେଳେ ଶ୍ରେଣୀରୁ ବାହାରିବ । ବାହାରିବା ପରେ ପରେ ଦୁହିଁଙ୍କର ପ୍ରକୃତଟା ବାହାରି ପଡ଼େ । ମହାବଳ ବାଘ ପରି ଦୁଇ ଭାଇଯାକ ଆଗଧାଡ଼ିକୁ କୁଦିପଡ଼ି କହନ୍ତି— ସମସ୍ତେ ଶୀଘ୍ର ଉଠିପଡ଼ । ଆମେ ଦୁହେଁ ବସିବୁ । ଯଦି ପିଲାମାନେ ଉଠିଗଲେ ତ ଭଲକଥା । ନ ଉଠିଲେ ଯଦି ଆରମ୍ଭ ହୋଇଯାଏ ଛେଚପ୍ଟାର ରାମ ଆଉ ରାବଣ ଯୁଦ୍ଧ ।

କାହାକୁ ବିଧାଏ ତ ପୁଣି କାହାକୁ ଗୁପୁଡ଼ାଏ, ଟେବୁଲ ଉପରୁ ପାଞ୍ଚଣଟା ଆଣି କାହାକୁ ପାହାରଟାଏ ପକାଇଦିଏ ତ ଶିରିଆ କାହା ବହି ଖାତା ଚିରିଦିଏ, ଏପରି ଅତ୍ୟାଚାର ଅବା ପିଲେ ସହନ୍ତେ କେତେକ, କଥାରେ ଅଛି —

"ଜୋର୍ ଯାର—ମୁଲକ ତାର"

ଆଉ କଳ ଡକରାଳ ନ କରି ପିଲାମାନେ ପ୍ରାୟ ଉଠି ଯାଆନ୍ତି । ଦୁହେଁଯାକ ଯଥା ସ୍ଥାନରେ ବସନ୍ତି ।

ଆଉ ଯେଉଁ ଦିନ ସାର୍‌ଙ୍କୁ ନ ଦେଖିବେ ଦୁହେଁ ଶ୍ରେଣୀରେ ପଶିଲେ ସେ ଦିନ କଟେ ପୁଅବାର ।

ସେ ଦିନ ବର୍ଷା ପାଗ ପାଇଁ ଶିକ୍ଷକ ପିଲାମାନଙ୍କୁ ଛାଡ଼ିଦେଇଥାଆନ୍ତି ମାଗିଆ ଶିରିଆ ଦୁହେଁଯାକ ଘରକୁ ଆସି ବେଶ୍ ପେଟେ ଲେଖେ ଭୋଜନ ସାରି ଥିଲେ । ଆଗ ଶିରିଆ କହିଲା—ଭାଇ !

—କଣ' ? ମାଇଆ କହିଲା ।

—ଦେଖୁନୁ ଚ ପାଗଟା କେମିତି ।

—ଦେଖିବ ଆଉ କଣ, ଗାଁ ଦାଣ୍ଡରେ ପରା ବର୍ଷା ପାଣିରେ ସୁଅ ଛୁଟିଛି ।

— ଏ ସୁଯୋଗ ଛାଡ଼ିବା କଥା ନୁହଁ ।

—ମାନେ ?

—ତୁ ପଢ଼ିନୁ ନାଁ, ଆମ ବହିରେ ଅଛି ।
ଭସିଯା' ମୋର କାଗଜ ଡ଼ଙ୍ଗା ଭସିଯାଆ·········

—ଓଃ, ଏଇ କଥା ।

—ହଁ ଚାଲେ ଡଙ୍ଗା କରି ଭସାଇବା ।

— ଚାଲେ ବହୁତ ମଜା ହେବ ।

— ଆଉ ।

—ଥରି ଥରି ପାଣି ସୁଅରେ ଚାଲିବ ।

—ଆରେ, ଡେରି କାହିଁକ ?

—କ'ଣ କରିବ ?

—ଯା' ଖାତାରୁ କାଗଜ ଚିରିଆଣ ।

ପାଟିରୁ କଥା ଶେଷ ନ ହେଉଣୁ ନିରିଆ ଚାଲିଲା ଘର ଭିତରୁ ଖାତାଟିଏ ଆଣିବା ପାଇଁ ଖାତାଟି ଆଣି ବାର ଦର୍ପରେ ଭାଇ ପାଖରେ ଦେଇ କହିଲା—ଶୀଘ୍ର ଶୀଘ୍ର ବନେଇ ଦିଅ-ମେଘ ଛାଡ଼ି ଆସିଲାଣି । ପାଣିର ସୁଅଟା ଯଦି କମିଯାଏନା ତେବେ ଆଉ କଦାପି ଭସିବନି ଡଙ୍ଗା ।

ଦୁହେଁଯାକ ମିଶି ସାତେ ସାତେ ଦୁଇ ଗୃହଗୋଟି ଡଙ୍ଗା ବନାଇ ଡେଇଁ ପଡ଼ିଲେ ଗାଁ ଦାଣ୍ଡକୁ, ବର୍ଷାରେ ଜୁଡ଼ୁବୁଡ଼ୁ ହୋଇ ଆରମ୍ଭ କଲେ ତାଙ୍କର ଖେଳ ।

ଏଣେ ପଧାନେ ଘରର ଏକୋଣରୁ ସେ କୋଣ, ଏପାଖରୁ ସେପାଖ ଯାଏ ଖୋଜା ଖୋଜି କରି ଦେଖିଲେ ନାତି ଶିରୋମଣି ଦୁଇଟି ତାଙ୍କର କେଉଁଠି ହେଲେ ଦେଖା ନାହାଁନ୍ତି, ବରଷା ପାଗ ଗଲେ କୁଆଡ଼େ, ନଈନାଳ ବଢ଼ିଛି, ପିଲାଦି'ଟା ଏମିତି ଭାବି ଦାଣ୍ଡକୁ ବାହାରି ଆସିବା ମାତ୍ରେ ଦେଖିଲେ ବେଶ୍ ନାତି ଦୁଇଜଣ ଯେ ଯାହା କାମରେ ବ୍ୟସ୍ତ, ବୁଢ଼ା ଯେତେ ଡାକଲେ ମଧ୍ୟ ଶୁଣିବା ପାଇଁ କେହି ଟିକିଏ ସୁଧା ରାଜି ନୁହଁନ୍ତି ।

ଶେଷକୁ ନିରୂପାୟ ହୋଇ ବୁଢ଼ା ପଛିଆଟିଏ ମୁଣ୍ଡରେ ଦେଇ ବାଧହୋଇ ପିଣ୍ଡାତଳକୁ ଓହ୍ଲାଇଲେ । ଦୁହିଁଙ୍କ କାନଧରି ଟାଣି ଟାଣି ଘରକୁ ଆଣି ପାଖରେ ବସାଇ ପୋଛି ପୋଛି କରିଦେଲେ, ତା'ପରେ ଧମକ ଚମକ ଦେଖାଇ ଶୋଇବା ପାଇଁ କହିଲେ, କିନ୍ତୁ କଥାରେ ପରା ଅଛି—

ଯେତେ କହିଲେ ଭାଗବତ
ଚୋର ନୋହିବ ମୋର ଚିତ୍ତ ।

ସେହିପରି ଶିରିଆ ମିରିଆ ଦୁହେଁଯାକ ବୁଢ଼ା କଥାକୁ ଏ କାନରେ ପୂରାଇ ସେ କାନରେ କାଢ଼ି ଦେଲେ ଶେଷକୁ ବୁଢ଼ା ଆଉ କିଛି ଉପାୟ ନ ପାଇ କହିଲେ, ପିଲାଏ ଆସ ମୋ ପାଖରେ ଶୁଅ, ମୁଁ ତୁମକୁ ମଜା ମଜା କଥା କହିବି କହିଥିଲିପରା 'କାହାଣୀ ବଣିକ ଶଂଖ'' ଆଉରି ଅନେକ କଥା କହିବି ବୋଲି । ବୁଢ଼ାକଥା ଶୁଣି

ନାତି ଦୁଇଟିଯାକ ଆନନ୍ଦରେ କୁଳୁରି ଉଠି କହ କହ ବୋଲି ବ୍ୟସ୍ତ କଲେ ତହୁଁ ବୁଢ଼ା କହିଲା—

ଶୁଣରେ ମୋ ନାତି ମାନ ମୋର କଥା
ଶୋଇପଡ଼ ପାଶେ ମୋର
ଅସୁର ସଙ୍ଗତେ ଅସୁରୁଣୀ କଥା
କହିବି କରି ଆଦର ।



## ନିପୁର ସୁନ୍ଦର ଓ ମରୁତସେନ୍

ଅନେକ ଦିନ ତଳର କଥା, ଯେଉଁ କାଳରେ କଥାଟି ଆଜ କହିବି ବହୁତ ପୁରୁଣା କାଳର ଶୁଣ, ମନ ଦେଇଥିବ । କଥା ପଦକେ ହୁଁ ମଧ୍ୟ ମାଣିବ ।

ସେତେବେଳେ ପାଟଣାଗଡ଼ରେ ରାଜୁତି କରୁଥାନ୍ତି ରାଜା ମରୁତ୍ ବର୍ମା, ଯାଁଙ୍କ ପିତା ପବନର ଅନ୍ୟ ନାମ, ହେଲେ କାମ ତାଙ୍କର ସଂପୂର୍ଣ୍ଣ ଭିନ୍ନ ପ୍ରଜାନୁରଞ୍ଜନ ହିଁ ତାଙ୍କର ଥିଲା ଏକମାତ୍ର କାମ । ରାଜା ମରୁତଙ୍କ ରାଜୁତି ସମୟରେ କୌଣସି ଲୋକ କଦାପି କଷ୍ଟ ନଥିଲା । ମୁଁ ଉପବାସରେ ରହିଛି ବୋଲି ଯଦି କେବେ ରାଜା ଶୁଣୁ ଥିଲେ କୌଣସି ଲୋକ ଉପବାସ ରହିଛି ଅଥବା କୌଣସି ଅସୁବିଧାରେ ପଡ଼ିଛି ତେବେ ସେ ସାତେ ସାତେ ଯାଇ ତା'ର ସମସ୍ତ ଭଲ କର୍ମକରି ଆସନ୍ତି । ସେଥିଲାଗି ସାରା ରାଇଜରେ ତଥା

ତାଙ୍କର ପଡ଼ୋଶୀ ରାଜ୍ୟମାନଙ୍କରେ ମଧ୍ୟ ତାଙ୍କର ପ୍ରଶଂସା ଲାଗି ରହିଥାଏ ।

ପ୍ରଜାମାନେ କୁହନ୍ତି ସତରେ ଆମ ରାଜା ବୋଧହୁଏ କେଉଁ ଜନ୍ମରେ ଆମର ବାପା ବା ମାଆ ଥିଲେ ବୋଧହୁଏ । ତା' ନ ହେଲେ କିଏ ଖାଇଲା କିଏ ନ ଖାଇଲା ଏମିତି ଚାକର ବାକରଙ୍କୁ ପଠାଇ ଖବର ନିଅନ୍ତେ ବା କାହିଁକି ? ଯଦି କେବେ କାହାଠୁ ଶୁଣନ୍ତି ଯେ, ସେ ଆଜି ଉପବାସ ରହିଛି ତେବେ କାଳ ବିଳମ୍ବ ନ କରି ତା' ପାଖକୁ ଯାଇ ତା'ର ଭଲମନ୍ଦ ସମସ୍ତ କଥା ବୁଝି ଯାହା ଦରକାର ତାକୁ ନିଶ୍ଚୟ ପ୍ରଦାନ କରନ୍ତି । ଏଥିରେ କେବଳ ରାଜ୍ୟବାସୀ କାହିଁକି ? ଅନ୍ୟ ଯିଏ କିଏ ଶୁଣିବ ଖୁସିତ ହେବା ସ୍ୱାଭାବିକ ପରଂ ତୁ ରାଜାଙ୍କର ଜୟ ଜୟକାର ଧ୍ୱନି ନିଶ୍ଚୟ ଦେବେ ।

କବି ଗଙ୍ଗାଧର ମେହେରଙ୍କ ଭାଷାରେ—

ଯା ମନ ଯେପରି ତା ଲାଗି ସେପରି
ଫଳ ଥୋଇଥାଏ ବିଧି,
ଉଚ୍ଚ ମନା ଉଚ୍ଚ ଅମୃତ ଲଭଇ
ନୀଚ ମନା ପାଏ ବିଷ ।

ଏହାର ଅର୍ଥ ଯଥାର୍ଥତାରେ ଦେଖିବାକୁ ଗଲେ ଅକ୍ଷରେ ଅକ୍ଷରେ ସତ୍ୟ । ରାଜା ମରୁତଙ୍କ ମନତ ସମ୍ପୂର୍ଣ୍ଣ ନିର୍ମଳ ତାଙ୍କ ପାଖରେ ଯେଉଁ ପାତ୍ର ମନ୍ତ୍ରୀ ରହିବେ, ସେ ଅବା କାହିଁକି ତାଙ୍କ ସମତୁଲ୍ୟ ନ ହେବ ।

ଠିକ ସେହିପରି ତାଙ୍କ ପାଖରେ ଥାଆନ୍ତି ଏକ ବୃଦ୍ଧ ଯୋଖତ ମନ୍ତ୍ରୀ, ନାଁ ତାଙ୍କର ସୁବାନ୍ଦ୍ର । ସେ ଘୋର ଠାକୁର ଭକ୍ତ ବାପା

ମାଆଙ୍କର ପୁତ୍ର ସନ୍ତାନ ହେଉ ନ ଥିବାରୁ ଜଣେ ମୁନିଙ୍କ ଆଶ୍ରୟ ନେଇ ସନ୍ତାନଟିଏ ଲାଭ କଲେ । ତେଣୁ ତାଙ୍କ ନାଁ ରହିଲା ମୁନିନନ୍ଦ, ରାଜା ମରୁଡ଼ଙ୍କପରି ସେ ମଧ୍ୟ ପ୍ରଜାଙ୍କର ସୁଖରେ ଦୁଃଖରେ ଭାଗୀ ହୋଇଥା'ନ୍ତି । ମୋଟାମୋଟି ମନ୍ତ୍ରୀ ଯେପରି ରାଜା ସେହିପରି ଭାବରେ ପାଟଣାଗଡ଼କୁ ଚଳାଉ ଥାଆନ୍ତି ।

ପାଟଣାଗଡ଼ର ପଡ଼ୋଶୀ ରାଜା ଭଲାଇଗଡ଼ରେ ସେତେବେଳେ ରାଜୁତି କରୁଥାନ୍ତି । ରାଜା ତ୍ରିପୁର ସୁନ୍ଦର । ନାଁଟା ବହୁତ ସୁନ୍ଦର ରୂପଟା ମଧ୍ୟ ଠିକ୍ କନ୍ଦର୍ପ ତୁଲ୍ୟ ପରନ୍ତୁ ଗୁଣ ବହୁତ ଖରାପ ଯାହାଦ୍ୱାରା ସମଗ୍ର ରାଜ୍ୟରେ ପ୍ରଜାପୁଞ୍ଜ ସର୍ବଦା ତାଙ୍କର ବଦ୍‌ନାମ କରୁଥାନ୍ତି । ଯେତେବେଳେ ହେଲେ ତାଙ୍କ ଆଗରେ ମଧ୍ୟ ପ୍ରଜାମାନେ କୁହନ୍ତି ପ୍ରକୃତରେ ରାଜାହିଁ ସେହି ମରୁଡ଼ ସେନ୍ ତାଙ୍କପରି ରାଜା ପ୍ରାୟ ଆଉ ଏ ମହି ମଣ୍ଡଳରେ ନାହିଁ ।

ତ୍ରିପୁର ସୁନ୍ଦରଙ୍କ ରାଜ୍ୟର ପ୍ରଜା ତାଙ୍କର ଗୁଣଗାନ ନକରି ପଡ଼ୋଶୀ ରାଜ୍ୟ ରାଜାଙ୍କ ଗୁଣଗାନ କରିବା କଥା ଶୁଣିବା ମାତ୍ରେ ସେ କ୍ରୋଧାନ୍ୱିତ ହେଉଥାନ୍ତି । ସଦା ସର୍ବଦା ତାଙ୍କର ରାଗ ରହିଥାଏ ସେହି ମରୁଡ଼ ଉପରେ । କିପରି ତାଙ୍କୁ ପାନେ ଚଖାଇବେ ସେ କେବଳ ସେହି ବ୍ୟବସ୍ଥାରେ ଥାଆନ୍ତି । କଥାରେ ଅଛି—

ଯାହାକୁ ରଖିବେ ଅନନ୍ତ
କି କରି ପାରେ ବଳବନ୍ତ ।

ଏ ଭାଗବତ ବାଣୀଟି ଚିର ଶାଶ୍ୱତ, ଏହାକୁ କଦାପି କେହି କଣ ଅନାଥ କରି ଦେଇ ପାରିବ । ରାଜା ନିର୍ଜନ ସେନ୍ତ କାହାରି ଅମଙ୍ଗଳ ଚିନ୍ତା କରନ୍ତି ନାହିଁ । କାହାରି ମନ୍ଦରେ ନାହାନ୍ତି କିନ୍ତୁ ସେ ଅବା କାହିଁକି ହଇରଣରେ ପଡ଼ିବେ । ତାଙ୍କର ପିଏ ଅମଙ୍ଗଳ

ଚିନ୍ତା କରିବ । ମୁଁ ତାଙ୍କୁ କିଛି ନ କହି କେବଳ ଭଗବାନଙ୍କ ଉପରେ ନିର୍ଭର କରି କପାଳ ଆଡ଼ର ଚାହିଁଛନ୍ତି । ଭଗବାନ ଠିକ୍ ତାଙ୍କ ଦୁଃଖ ଶୁଣି କରଣୀୟ କର୍ମ ମାନ ନିର୍ଣ୍ଣିତ କରନ୍ତି ।

ଏଣେ ରାଜା ତ୍ରିପୁର ସୁନ୍ଦର ଦିନକୁ ଦିନ ବାରମ୍ବାର ମନ୍ତ୍ରୀ ସେମାନଙ୍କ ଉପରୁ ପ୍ରତିଶୋଧ ନେବାର ଉପାୟ ଚିନ୍ତା କରୁଥାଏ । କପରି ଭାବରେ ପ୍ରତିଶୋଧ ନେବ ବୋଲି ଚିନ୍ତା କରି ମନ୍ତ୍ରୀଙ୍କୁ ଏକଥା କହିଲେ । ଯେମିତି ମଥାଣିକୁ ସେମିତି ଚୁଅ ବିଧାତା ଖଞ୍ଜିବାପରି ରାଜା ପାଖକୁ ମନ୍ତ୍ରୀ ଠିକ୍ ଥିଲେ ଗୁପ୍ତ ମନ୍ତ୍ରଣା କକ୍ଷରେ ଦୁହିଁ କଥା ଭାଷା ହେଲେ—

—ମହାମନ୍ତ୍ରୀ ।

—ରାଜାର ସମାଚାର କ'ଣ ।

—ସମାଚାର କ'ଣ ମହିମା ଅଜଣା ଅଛନ୍ତି ।

—କେଉଁ କଥା ।

—ସବୁକଥା ।

—ମାନେ ।

— ମୁଁ କହୁଛି ରାଜ୍ୟର ସମ୍ବାଦ କଣ ?

—ଓଃ, ତେବେ ଶୁଣନ୍ତୁ ।

—କୁହ ।

—ସବୁ ଆଡ଼େ ଆପଣଙ୍କ କୁତ୍ସାରଚନା ।

—ତେବେ······

—କ'ଣ ଆଜ୍ଞା ।

—ଏହାର ସମାଧାନ କରିବାକୁ ହେବ ।

— ସବୁର ମୂଳ କାରଣ ।

—କଣ ? ? ?

—ରାଜା ମରୁଛ ସେନ ।

—ମୁଁ ଜାଣିଛି ।

—ତୁରନ୍ତରେ ତାଙ୍କୁ ଯଦି ଦମନ କରି ନଯାଏ ତେବେ ଆପଣଙ୍କର ପ୍ରତିଷ୍ଠାଶ୍ରି ଧୂଳିରେ ମିଶି ଯିବ ।

— ନିଶ୍ଚୟ ଦମନ କରିବି ।

— ହଁ ସିଏତ ଗୋଟିଏ କଥା ।

—ତୁମେ ଚନ୍ଦ୍ରାଙ୍କର ଲୁହ ।

—ମୋ ମତରେ ଯେଉଁ ରାଜା ସହ ଆମେ ଯୁଦ୍ଧ ଘୋଷଣା କରି ତାଙ୍କୁ ହରାଇବା ପାଇଁ ଉଦ୍ୟମ କରିବା ।

— କିନ୍ତୁ ସେତ ଏଥିପାଇଁ ସଜାଗ ରହିଥିବ ।

- ନାଁ, ଆମେ ଅକସ୍ମାତ୍ ଆରମ୍ଭ କରିବା ।

— ତେବେ ଆସନ୍ତା କାଲି ।

—ନିଶ୍ଚୟ !

—ବେଶ୍ .....

ରାଜା ଏବଂ ମନ୍ତ୍ରୀ ଦୁହେଁ ଯାକ ଘର ଭାଙ୍ଗିବାରେ ତ ଏକ୍‌ଦମ୍ ଧୂରନ୍ଧର, ରାଜାଙ୍କଠାରୁ ସ୍ୱୀକୃତି ପାଇ ମନ୍ତ୍ରୀ ଚାଲି ଗଲେ । ସୈନ୍ୟ ବାହିନୀ ସଜ କରିବା ପାଇଁ ଏଣେ ରାଜା ମଧ୍ୟ ନିଜର ଆପ୍ତେ'ଜନ କରି ଦୂତ ହାତରେ ନିମ୍ନ ମତେ ଗୋଟିଏ ପତ୍ର ପଠାଇ ଦେଲେ । ସେଥିରେ ଲେଖାଥିଲା—

ମହାମାନ୍ୟ—

ପଣ୍ଡିତ ଗଙ୍ଗାଧରର ମରୁଚ ସେନ୍‌ଙ୍କୁ ଯଥାମାନ୍ୟ, ଅବପ୍ରାପ୍ତ ଆଗାମୀ ପ୍ରଭାତରୁ ଦୁଇରାଜା ସହ ଯୁଦ୍ଧ ଆରମ୍ଭ ହେବ,

ଲୁଚେଇର କାରଣ କହିବା ପାଇଁ ମୁଁ ଅସମର୍ଥ, କାରଣ ସବୁସ୍ଥଳରେ ସବୁ କଥା କହି ହୁଏନାହିଁ ।

"ଇତି"
ଭଲ୍ଲଇଗଡ଼ ରାଜା
"ନିପୁର ସୁନ୍ଦର"

ପତ୍ର ବାହକ ପତ୍ର ଧରି ବାହାରିବା ସମୟରେ ଦିନ ପ୍ରାୟ ଅଧା ଅଧି ଯାଇ ସାରିଥାଏ । ତେଣୁ ଘୋଡ଼ାରେ ବସି ପ୍ରାଣମୂର୍ଚ୍ଛା ଘୋଡ଼ାକୁ ଦଉଡ଼ାଉ ଥାଏ । କାରଣ ଟିକିଏ ଯଦି ବିଳମ୍ବ ହେବାର ରାଜା ଜାଣନ୍ତି ତେବେ ମନ୍ତ୍ରୀଙ୍କ ଆଦେଶରେ ଗଣ୍ଡି ମୁଣ୍ଡ ଏକ୍‌ବାରେ ଅଲଗା ହୋଇଯିବ, ରାଜାତ—

ରାଜାତ ବଡ଼ ଦୟାଳୁ
ବୁଝନ୍ତି ଖମ୍ଭ ଆଳୁ ।

ଅର୍ଥକୁ ବିଅର୍ଥ କରି ଦଣ୍ଡ ଦେବାରେତ, ସେ ଧୁରନ୍ଧର, ଆଉ ଚିନ୍ତା କରିବାରେ ଅବା ଅଛି କ'ଣ ? ଏମିତି ଭାବୁ ଭାବୁ ପ୍ରାୟ ଘଣ୍ଟାଏ ଦୁଇଘଣ୍ଟା ମଧ୍ୟରେ ପାଟଣା ଗଡ଼ ସୀମାରେ ପହଞ୍ଚି ଯାଇ ଉଆସ ମଧ୍ୟକୁ ଯିବା ପାଇଁ ପ୍ରସ୍ତୁତ ହେଲା, ଘୋଡ଼ାକୁ ସିଂହ ଦ୍ୱାର ନିକଟରେ ରଖି ଭିତରକୁ ଚାଲିଲା ।

ରାଜା ମନ୍ମଥ ସେନ୍ ଦୂରରୁ ପଡ଼ୋଶୀ ରାଜ୍ୟର ଦୂତକୁ ଦେଖି କର୍ମଚାରୀ ଜଣକୁ ଆଦେଶ ଦେଲେ ସେ ଯାଇ ତାଙ୍କର ବେଶ୍ ଚର୍ଚ୍ଚା ବୁଝିଲା । ଆନନ୍ଦ ହୋଇ ଦୂତ ରାଜାଙ୍କୁ ପତ୍ର ଦେଇ ନିଜ ରାଜ୍ୟ ଅଭିମୁଖେ ଫେରି ଆସିଲା । ସେତେବେଳକୁ ସନ୍ଧ୍ୟା ଆଗତ ପ୍ରାୟ ।

ଦିନକର ସୂର୍ଯ୍ୟ ପୂର୍ବାକାଶରୁ କ୍ରମେ କ୍ରମେ ଅପସରି ଯାଇ ପଶ୍ଚିମାକାଶକୁ ତାମ୍ର ବର୍ଣ୍ଣ ଧାରଣ କରାଇ ବୁଡ଼ି ଯିବାକୁ ବସି-ଲାଣି । ଉଆସର ଚତୁର୍ଦ୍ଦିଗରେ ପକ୍ଷୀମାନଙ୍କ କାକଳି ବେଶ୍ ସୁନ୍ଦର ଶୁଭୁଥାଏ । ରାଜ ଉଦ୍ୟାନରେ କୂଜନ ରତ ପିକୀମାନଙ୍କ ସ୍ୱର ଆହୁରି ଶ୍ରୁତି ମଧୁର ହେଉଥାଏ । ବ୍ରାହ୍ମଣମାନେ ଉଆସ ମଧ୍ୟରେ ସାୟଂ କାଳୀନ ବେଦପାଠ ପୂର୍ବକ ରାଜାଙ୍କୁ ଆଶୀର୍ବାଦ ପ୍ରଦାନ କରୁଥାନ୍ତି ।

ଠିକ୍ ତା’ ପରେ ପରେ ରାଜା ମନ୍ତ୍ରୀଙ୍କୁ ବିଶ୍ରାମ କକ୍ଷ ନିକଟକୁ ଡାକି ପତ୍ରଟି ବଢ଼ାଇ ଦେଲେ । ରାଜା ମଧ୍ୟ ସେତେବେଳେ ଯାଏ ନିଜେ ମଧ୍ୟ ସେ ପତ୍ରକୁ ପାଠ କରି ନ ଥାନ୍ତି । ମନ୍ତ୍ରୀ ପଡ଼ୋଶୀ ରାଜ୍ୟର ପତ୍ର ଜାଣି ପ୍ରଶ୍ନ କଲେ—ମଣିମା, ଏ କେଉଁ ରାଜ୍ୟର ପତ୍ର ।

—ଭଲ୍ଲଇଗଡ଼ର ପତ୍ର ।

—ଓ ରାଜା ବିପୁର ସୁନ୍ଦର ଦେଇଛନ୍ତି ।

—ହଁ ।

—କାହିଁକି ?

—ମୁଁ ତ ସେ ପତ୍ର ଖୋଲି ନାହିଁ ।

—ବେଶ୍, ମୁଁ ଦେଖୁଛି ଏତିକି କହି ପତ୍ର ଖୋଲି ପଢ଼ିଲେ ମହାମନ୍ତ୍ରୀ ।

କ’ଣ ସେଥିରେ ଲେଖାଅଛି, ପ୍ରଶ୍ନ କଲେ ରାଜା ମରୁତ-ସେନ -

—ଏଥିରେ ଯାହା ଲେଖା ଅଛି ଶୁଣିଲେ ଆପଣ ଆଶ୍ଚର୍ଯ୍ୟ ହେବେ । ରାଜା ବିପୁର ସୁନ୍ଦରର ଏଭଳି ହିଂସା ଆମ ଉପରେ

କାହିଁକି ମୁଁ ତ ସେକଥା ଟିକେ ସୁଦ୍ଧା ଜାଣିପାରୁ ନାହିଁ, କହିଲେ ମହାମନ୍ତ୍ରୀ ।

— ତେବେ ସେଥିରେ ଲେଖା ଅଛି କ'ଣ ?

ରାଜାଙ୍କ ପ୍ରଶ୍ନର ଉତ୍ତର ଦେଇ ମନ୍ତ୍ରୀ କହିଲେ ସେ ଲେଖିଛନ୍ତି ଆସନ୍ତା ପ୍ରଭାତରୁ ଆମ ସହ ଯୁଦ୍ଧ କରିବେ ।

—କିନ୍ତୁ କାହିଁକି ?

ସେ ବିଷୟ କାହିଁ ଏଥିରେ ତ କିଛି ଲେଖି ନାହାନ୍ତି । ଶୁଣନ୍ତୁ ମୁଁ ମଧ୍ୟ ଆପଣଙ୍କ ଆଗରେ ଆଉ ଥରେ ପଢି ଦେଉଛି, ଏତକ କହି ମନ୍ତ୍ରୀ ପୁଣି ପଢ଼ିବା ଆରମ୍ଭ କଲେ ପତ୍ରଟି—

ମହାମାନ୍ୟ,

ପାଟଣା ଗଡ଼ାଧୀଶ୍ୱର ମହୁତ ସେନ୍‌ଙ୍କୁ ଯଥାମାନ୍ୟ, ଅଭିପ୍ରାୟ ଆଗାମୀ ପ୍ରଭାତରୁ ଦୁଇରାଜ୍ୟ ସହ ଯୁଦ୍ଧ ଆରମ୍ଭ ହେବ, ଲଢ଼େଇର କାରଣ କହିବା ଲାଗି ମୁଁ ଅସମର୍ଥ । କାରଣ ସବୁକଥା ସବୁଆଡ଼େ କେବେ କହିହୁଏନା ।। ଇତି ।

" ଭଲାଇଗଡ଼ ରାଜା"
ତ୍ରିପୁର ସୁନ୍ଦର

—ହଠାତ୍ କରିବା କ'ଣ ?
— ହଁ କରିବା କ'ଣ ?
କିଛିକ୍ଷଣ ଚିନ୍ତା କରି ମନ୍ତବ୍ୟ ଦେଲେ ମନ୍ତ୍ରୀ—

ମହିମା, ମୋର ଅନୁରୋଧ ଆପଣ ପୁଣି ପତ୍ରବାହକ ହାତରେ ସନ୍ଧିର ପ୍ରସ୍ତାବ ଦିଅନ୍ତୁ, ଅଥବା ପଚାରନ୍ତୁ ସେ କେଉଁ ଅଭିପ୍ରାୟ ନେଇ ଆମ ସହ ଯୁଦ୍ଧ ଘୋଷଣା କରୁଛନ୍ତି—

—କିନ୍ତୁ ସମସ୍ତ ଜାଣି, ତୁମେ ଯାହାଠା କହିଲ ଅବଶ୍ୟ ନିଗିଟ ସତ । ପରନ୍ତୁ ପତ୍ର ଲିଖିତାନୁସାରୀ ଯଦି ପାଣ୍ଡବଲେ ଯୁଦ୍ଧ ହେବ, ଆଉ ପତ୍ର ନେଇ ତାଙ୍କଠାରୁ ଉତ୍ତର ପାଇବାର ଆଶା ନାହିଁ । କହିଲେ ରଜା ମରୁତ ।

ମନ୍ତ୍ରୀ ବଡ଼ ଅଡୁଆରେ ପଡ଼ିଲେ—

ଏଣୁ ମାରିଲେ ବ୍ରହ୍ମହତ୍ୟା
ତେଣୁ ମାରିଲେ ଗୋ-ହତ୍ୟା ।

ଏ ପଟରେ ଯଦି କିଛି ବ୍ୟବସ୍ଥା ନ କରନ୍ତି, ତେବେ ଆସନ୍ତା କାଲି ଯୁଦ୍ଧରେ ସମସ୍ତେ ପରାସ୍ତ ହେବେ । ଆଉ ଯେ ପରାସ୍ତ ହେବେ କେବଳ ତାହା ନୁହେଁ, ପାଟଣାଗଡ଼ର ମାନସମ୍ମାନ ସବୁ କିଛି ମାଟିରେ ମିଶିଯିବ । ତେଣେ ଯଦି ମଧ୍ୟ ବ୍ୟବସ୍ଥା କରନ୍ତି ତାହେଲେ ଏତେ ଶୀଘ୍ର ସେନାବାହିନୀ ଠିକ ହେବା ଅସମ୍ଭବ । ତେବେ କ'ଣ କରିବି, କଣ କରିବି – କଣ କରିବି ଏମିତି ବାର ଆଡ଼ୁ ତେରକଥା ଭାବିବାକୁ ଲାଗିଲେ ମହାମନ୍ତ୍ରୀ ।

ସତରେ କିପୁରର ସୁନ୍ଦର ରଜା ସିନା । କିନ୍ତୁ ସେ ରଜକାର୍ଯ୍ୟ ମର୍ଯ୍ୟାଦା ଜାଣେନା ।

ଜାଣେ ନାହିଁ ରଜନୀତି
ଜାଣି ନାହିଁ ଧର୍ମକର୍ମ
ନାହିଁ ତା'ର ମାନବିକତା ।
ମାନବର ମୂଲ୍ୟବୋଧ ।

—କଣ କରିବି ?

—କଣ କରାଯିବା ଉଚିତ ? ?

—କଣ ଅବା କରଯିବ ? ? ?

ଏମିତି ଭାବନା ରାଜ୍ୟରେ ଉଡ଼ୁ ଉଡ଼ୁ ରାଜା ପୁଣି ପ୍ରଶ୍ନ କଲେ, କ'ଣ ସ୍ଥିର କଲେ ମହାମନ୍ତ୍ରୀ, କୁହନ୍ତୁ, ସମୟ ତ କାହାକୁ କେବେ ଅପେକ୍ଷା କରେନା, ଗଡ଼ିଗଲେ ଅବିରାମ ଗତିରେ, ସନ୍ଧ୍ୟା କେତେବେଳୁ ଚାଲିଯାଇ, ଆସିଗଲାଣି ରଜନୀ ରାଣୀ, ସମସ୍ତ ପୃଥିବୀ ପୃଷ୍ଠରେ ବିଛାଇ ଦେଲାଣି କଳା ଶାଢ଼ୀ, ଆଉ ବିଳମ୍ବ ନ କରି କୁହନ୍ତୁ, ପୁଣି ବିଶ୍ରାମ ନେବି ।

ରାଜାଙ୍କ ପ୍ରଶ୍ନରେ ମନ୍ତ୍ରୀ ବିଚଳିତ ହୋଇ ପଡ଼ିଲେ—ମନେ ମନେ "ତ୍ରାହିମାଂ ଜଗଦୀଶ୍ୱର" କହି କହିଲେ ମହିମା ଆପଣ କିଛି ଚିନ୍ତା କରନ୍ତୁ ନାହିଁ, ଆଗାମୀ କାଲର ସମସ୍ତ ଦାୟିତ୍ୱ ମୋ ଉପରେ ନ୍ୟସ୍ତ ରଖନ୍ତୁ, ରାଜା ଏତକ ଶୁଣିବା ମାତ୍ରେ ସାତେ ସାତେ ଉଠି-ଚାଲିଗଲେ, ଯେପରିକି ସେ ଏଇ କଥା ପଦକୁ ତାଙ୍କର ପ୍ରତୀକ୍ଷାରତ ଥିଲେ ।

ରାଜା ଚାଲିଯିବାର ମୁହୂର୍ତ୍ତକ ପରେ ମନ୍ତ୍ରୀ ପ୍ରକୃତିସ୍ଥ ହୋଇ ଦେଖିଲେ ରାଜା ନାହାନ୍ତି । ଅଜାଣତରେ ତାଙ୍କ ପାଟିରୁ ଏହା ବାହାରି ଯାଇଛି ବୋଲି ସେ ଚିନ୍ତାକରି ଅନୁତପ୍ତ ହେଲେ ସିନା, କିନ୍ତୁ ଆସନ୍ତା କାଲର ସମସ୍ତ ଦାୟିତ୍ୱ ଯେ ତାଙ୍କ ଉପରେ । ଏକଥା ଚିନ୍ତା କରିବାମାତ୍ରେ ଦେହଟା ଅଜଣା ଆତଙ୍କରେ ଶିହରି ଉଠିଲା । ମନ୍ତ୍ରମୁଗ୍ଧ ପରି ଯେଇ ରାତିରେ ଚାଲିଲେ କଣ୍ଟିଆଳଙ୍କ କକ୍ଷକୁ, ଅନ୍ଧାରରୁ ଅନ୍ଧାରତର ରାତି ହୋଇ ଥିଲେ ମଧ୍ୟ କୌଣସି କଥାକୁ ଭ୍ରୂକ୍ଷେପ ନ କରି ଯାଇ ପହଞ୍ଚିଲେ ଲକ୍ଷ୍ୟ ସ୍ଥଳରେ ।

ଦ୍ୱାରଦେଶରେ ଅବତୀର୍ଣ୍ଣ ହୋଇ ମନ୍ତ୍ରୀ ମହାଶୟ କବାଟରେ ମୃଦୁଆଘାତ କରିବା ମାତ୍ରେ କଣ୍ଟିଆଳଙ୍କ ପୁଅ ଆସି କବାଟ ଖୋଲି ଦେଲା, ମନ୍ତ୍ରୀଙ୍କୁ ରାତିରେ ଦେଖି ଅଭିବାଦନ ପୂର୍ବକ ଆଶ୍ଚର୍ଯ୍ୟରେ

ପ୍ରଶ୍ନ କଲ—ଭିତରକୁ ଆସିବା ହୁଅନ୍ତୁ । କୁହନ୍ତୁ, କାହାକୁ ଖୋଜୁଛନ୍ତି ?

—ବାପା ଅଛନ୍ତି ?

—ଅଛନ୍ତି ।

—ଯାଅ, ଡ଼ାକିଦିଅ ।

ଚାଲିଗଲା କଣ୍ଟୁଆଳ ପୁଅ, ସେହିପରି ସ୍ଥାଣୁ ପାଲଟି ଠିଆ ହୋଇ ରହିଲେ ମହାମନ୍ତ୍ରୀ ମୁମାଦି । କଣ୍ଟୁଆଳ ପୁଅ ଯାଇ ତାର ବାପାକୁ ମହାମନ୍ତ୍ରୀ ଆଗମନ ସମ୍ବାଦ ଦେବାମାତ୍ରେ କଣ୍ଟୁଆଳ ଚମକି ପଡ଼ିଲା । ସନ୍ଧ୍ୟା ପରେ ମହାମନ୍ତ୍ରୀଙ୍କର ବା ଆଜି ମୋ ପାଖରେ କି କାମ ? ମୁଁ ତ ଆଜି ଦରବାରରେ କିଛି ତ୍ରୁଟି କରି ନାହିଁ । ତେବେ ଶ୍ରମ ସାର୍ଥକ କରି ମୋ ପାଖକୁ ଆସିବା ମହାମନ୍ତ୍ରୀ ମୁମାଦିଙ୍କର କ'ଣ ଦରକାର ।

ଏମିତି ଭାବି ଭାବି ଅତି ସନ୍ତର୍ପଣରେ ଯାଇ ମୁମାଦିଙ୍କ ପାଖରେ ପହଞ୍ଚିଲେ । କାରଣ କଥାରେ ଅଛି –

ମରଣ କାଳେ ନିଦ୍ରା ଗଲେ,
କାଳକି ଗୁଡ଼ଦେବ ଭଲେ ।

ଠିକ୍ ସେହିପରି, ମନ୍ତ୍ରୀ ଆସି ଦୁଆର ମୁହଁରେ ଯେତେବେଳେ ଠିଆ ହେଲେଣି, ତାଙ୍କ ପାଖକୁ ନ ଗଲେ ନ ଚଳେ, ତେଣୁ ବାଧ୍ୟ ଶିଶୁ ପରି ଯାଇ ପହଞ୍ଚିଲେ ।

ମହାମନ୍ତ୍ରୀ ମୁମାଦି କଣ୍ଟୁଆଳକୁ ଦେଖି କାଳ ବିଳମ୍ବ ନ କରି କହିଲେ—ଆସନ୍ତା ପ୍ରଭାତରେ ଯୁଦ୍ଧର ଆୟୋଜନ ହେଉଛି ସେନାପତିଙ୍କୁ କହି ସମସ୍ତକାମ ସମାପନ କରିଥିବ, ଏତକ ଏକ ନିଃଶ୍ୱାସରେ କହିଦେଇ ମନ୍ତ୍ରୀ ମହାଶୟ ଚାଲିଗଲେ । କଣ୍ଟୁଆଳ

ସେ ମୁହୂର୍ତ୍ତରେ ଏ କାନରେ ପୂରାଇ ସେ କାନରେ କାଢ଼ିଦେଇ ବିଶ୍ରାମ କକ୍ଷକୁ ଚାଲିଯାଇ ଥକ୍କା ମାରିଲାପରି ବସିଯାଇ ଚିନ୍ତାକଲେ ।

ଆରେ, ମହାମନ୍ତ୍ରୀ କ'ଣ ପାଗଳ ହୋଇଗଲେ ନାଁ କଣ, ସାତେ ସାତେ ଆସି ଏମିତି କହି ଚାଲିଗଲେ କାହିଁକି ? କାହା ସହିତ ଯୁଦ୍ଧହେବ ? ? କାହିଁକି ବା ଯୁଦ୍ଧ ହେବ ! ? ?

—କିଛିତ ବୁଝି ହେଉନି ?

— କଣ ? କାହିଁକି ? ?

—କି ଅଭିପ୍ରାୟରେ ? ? ?

ଏମିତି କଟୁଆଳଙ୍କର ମନକୁମନ କେତେଗୁଡ଼ିଏ ପ୍ରଶ୍ନ ଉଠିଲା ବରଂତୁ ସେ ପ୍ରଶ୍ନବାଚୀକୁ ସମାଧାନ କରିବ ବା କିଏ ? କଟୁଆଳଙ୍କର ସେସବୁ ପ୍ରଶ୍ନବାଚୀଙ୍କି ପ୍ରଶ୍ନବାଚୀରେ ସେ ଗତିକ ରହିଗଲା, କାହାକୁ କିଛି ନ କହି ସିଧାସିଧା ଚାଲିଲେ ସେନାପତିଙ୍କ ଘରକୁ । ତେଣିକି ଯେତେଯାହା ପ୍ରଶ୍ନ ଉଠିଲେ ମଧ୍ୟ --ପିତୃକାର୍ଯ୍ୟକୁ ପରିତ୍ୟାଗକରି ଆଗ ରାଜକାର୍ଯ୍ୟ କରିବାକୁ ପଡ଼ିବ, ସେନାପତିଙ୍କ ଘରେ ପହଞ୍ଚିବାବେଳେ ଶୟନ କକ୍ଷକୁ ସେ ଯାଉଥିଲେ । ଡାକ ଶୁଣି ବାହାରି ଆସିଲେ ।

—କିଏ ? ପ୍ରଶ୍ନକଲେ ସେନାପତି ।

—ମୁଁ --କହିଲେ କଟୁଆଳ ।

—ଏତେ ରାତିରେ !

—ମନ୍ତ୍ରୀଙ୍କ ଆଦେଶ !

—କ'ଣ ?

—ଆସନ୍ତା ପ୍ରଭାତରୁ ଯୁଦ୍ଧ ହେବ ।

—ଯୁଦ୍ଧ, କା' ସହିତ ।

—ମୁଁ ଜାଣେନା ।

—ତେବେ !

—ମନ୍ତ୍ରୀ ମହାଶୟ କହିଗଲେ ଆସନ୍ତା ପ୍ରଭାତରୁ ଯୁଦ୍ଧହେବ ।

—ବଡ଼ ବିଚିତ୍ର କଥା ।

—ହଁ, ଆସୁଛି ମୁଁ ।

ସେନାପତିଙ୍କୁ ସମ୍ବାଦ ଦେଇ ଗୁଳଗଲା କଟୁଆଳ, ସେନାପତି ବଡ଼ ହନ୍ଦରେ ପଡ଼ିଲେ, ଏ କ'ଣ, ହଠାତ୍ ଏ କଥା କାହିଁକି ?

—ଯୁଦ୍ଧହେବ···

—ଆସନ୍ତା ପ୍ରଭାତରୁ···

—କିନ୍ତୁ କା' ସହିତ ?

— କାହିଁକି ?

—କିଛିତ ସମ୍ବାଦ ନାହିଁ ?

କିନ୍ତୁ କଟୁଆଳର ପ୍ରଶ୍ନବାଚୀ ସେହି ପ୍ରଶ୍ନବାଚୀରେ ରହିବାପରି ମଧ୍ୟ ସେନାପତିଙ୍କର ରହିଗଲା, ମନ୍ତ୍ରୀଙ୍କର ଆଦେଶ ଯେତେବେଳେ ସେ ଆଉ କାଳ ବିଳମ୍ବ ନ କରିଯାଇ ସମସ୍ତ ବ୍ୟବସ୍ଥା କରିଦେଲେ ।

ଏଣେ ମହାମନ୍ତ୍ରୀ ଯିଏ ସମସ୍ତଙ୍କୁ କହିଦେଲେ, କିନ୍ତୁ ଏକା ରାତିରେ କ'ଣ ସବୁ ହୋଇପାରିବ, ଏଇ ଚିନ୍ତା ତାଙ୍କ ମନରେ ଘାରିଲା । କ'ଣ କରିବେ, ରାତିଭୋଜନ କରିବାଲାଗି ଗଲେ ମଧ୍ୟ ତାଙ୍କୁ ବିଷପରି ଲାଗିଲା, ଶୋଇବା ପାଇଁ ଶୟନ କକ୍ଷକୁ ଗଲେ ସେଠି ମଧ୍ୟ ସବୁ ବିପରୀତ ବୋଧହେଲା । ଆଜ କ'ଣ କରିବେ କପାଳ ଆଦର ଦୁଃଖ ଯାହାଲା ପରି ବିଛଣାରେ ଏପଟ ସେପଟ ହୋଇ ରାତି ବିତାଇଲେ କ୍ରମେ କ୍ରମେ ଟିକିଏ ଅସ୍ତ୍ରା ଲାଗିଲା ।

ମନ୍ତ୍ରୀ ମହାଶୟ ଗବାକ୍ଷ ମାର୍ଗରେ ଦେଖିବାକୁ ପାଇଲେ ଯେ କୁଆଁ ତାରା ଦିଶିଲାଣି । ପ୍ରକୃତି ଘାଟ କା'କ କା କା କରି ରଡ଼ି ଛାଡ଼ିଯାଉଛନ୍ତି । ସେ ଆଉ କାଳ ବିଳମ୍ବ ନ କରି ଶଯ୍ୟା ତ୍ୟାଗକରି ଚାଲିଲେ ସ୍ନାନ କରିବାଲାଗି ପୁଷ୍କରିଣୀ କୂଳକୁ, ପୁଷ୍କରିଣୀ ଜଳରେ ପହଞ୍ଚି କୁଆଡ଼କୁ ଦୃଷ୍ଟି ନ ଦେଇ ତରବର ହୋଇ ସ୍ନାନକରି ଚାଲିଆସି ପଶିଗଲେ ନିଜ ଇଷ୍ଟଦେବତା ଘରକୁ ।

ସେ ହେଉଛନ୍ତି ମହାଦେବୀଙ୍କ ଭକ୍ତ । ଘର ମଧ୍ୟରେ ଆଦିଶକ୍ତି ବିରଜାଙ୍କର ତୈଳଚିତ୍ର ବେଶ୍ ସୁନ୍ଦର ଭାବରେ ରହିଥାଏ । ନିତିଦିନ ପରି ସେଦିନ ପୂଜାସାରି ଅତି କାତର କଣ୍ଠରେ ଦେବୀଙ୍କ ବନ୍ଦନା ଗୀତିକା ଗାଇବାକୁ ଲାଗିଲେ ମହାମନ୍ତ୍ରୀ ମୁନିନ୍ଦ୍ର ।

—ଗୀତ—

ଜୟ ଜୟ ଆଦିଶକ୍ତି
ଜୟ ଆଦିମାତ
ପାଦ ପଦ୍ମେ ଏ ଦୀନର
ଘେନ ପ୍ରଣିପାତ...

ତ୍ରେତୟା ଯୁଗରେ ରାଜା
ପୂଜିଣ ତବ ଚରଣ
ବଧିଲେ ଆନନ୍ଦ ମନେ ସେ ରାବଣ
ଭୁଜ୍ୱ ପୁଣି ଆଦିଶକ୍ତି
ମାରିଲୁ ମହିଷାସୁର
ତୋ ଲାଗି ଯଯାତି ପୃଥ୍ୱୀ
ପାଳିଥିଲେ ସତ । ୧ ।

କେଉଁଠି ଶାରଳା ରୂପ
କେଉଁଠି ବିମଳା
ଯାଜପୁର ଯଜ୍ଞ କ୍ଷେତ୍ରେ
ବିରଜା ରୂପସ ।
ଘେନ ମୋର ପ୍ରଣିପାତ
ଘେନେ ମୁଁ ଭଣତ । ୨ ।
ଶିଖିନାହିଁ ମନ୍ତ୍ର ତନ୍ତ୍ର
ତୋର ପୂଜାରୀତ
ରଖ ରଖ ବୁଢ଼ବାର
ହେଲି ଆଦିଶକ୍ତି
ଭୂସ୍ୱଗୋ ଦ୍ୱିଭୁଜା ରଖ
ଚନ୍ଦ୍ର ଲେଖେ ଗୀତ

ଏତକ ଗାନକରି ଦେବୀଙ୍କୁ ପ୍ରଣାମକରି ଉଠିବାମାତ୍ରେ ଚତୁର୍ଦ୍ଦିଗରୁ ଯେପରି ପ୍ରତିଧ୍ୱନିତ ହେଲା···

— ବିଜୟସ୍ତୁ ସୁନିଶ୍ଚିତ···

— ବିଜୟସ୍ତୁ ସୁନିଶ୍ଚିତ···

— ବିଜୟସ୍ତୁ ସୁନିଶ୍ଚିତ···

ଆଉଥରେ ମୃଗାନ୍ଦ୍ର ଦେବୀଙ୍କୁ ପ୍ରଣାମ ଜଣାଇ ଚାଲିଲେ ରାଜାଙ୍କ ପାଖକୁ ।

ସେତେବେଳକୁ ସମ୍ପୂର୍ଣ୍ଣ ରାତି ପାହି ଯାଇଥାଏ । କୁଆ କୁମ୍ଭାଟୁଆମାନେ ରବକରି ନଅର ଫଟାଉଥାନ୍ତି । ବ୍ରାହ୍ମଣମାନେ ଦେବ୍ ଉଚ୍ଚକଣ୍ଠରେ ବେଦ ଗାନକରି ଚାଲିଥାନ୍ତି । ଦିନନାଥ ଦିବାକର ତାଙ୍କର ନିତ୍ୟକର୍ମ ସମ୍ପାଦନ ପାଇଁ ପୂର୍ବଦିଗକୁ ରକ୍ତ ରଞ୍ଜିତକରି ଆସିଲେ ।

ରାଜାଙ୍କ ମଧ୍ୟ ରାତିରେ ଏ ଚିନ୍ତାରେ ନିଦହୋଇ ନଥାଏ । ମନ୍ତ୍ରୀ ତତ୍‌କ୍ଷଣାତ୍ ପହଞ୍ଚି ରାଜାଙ୍କୁ କହିଲେ ମଣିମା ସବୁ ସ୍ଥିରହୋଇ ଯାଇଛି । ଭୁଲନ୍ତୁ କୌଣସି ଚିନ୍ତା ନାହିଁ । ଆମର ବିଜୟ ସୁନିଶ୍ଚିତ ।

—ବିଜୟ ସୁନିଶ୍ଚିତ !

—ହିଁ ।

—କପରି ଜାଣିଲ !

—ଜାଣିଛି ମଣିମା, କ୍ଷେତ୍ର ଉପରେ ଦେଖିବେ ।

ରାଜା ଏହାଶୁଣି ଅତି ଆନନ୍ଦିତ ହୋଇଗଲେ ଆଉ କାଳ ବିଳମ୍ବ ନ କରି ନିତ୍ୟକର୍ମ ସଂପାଦନା କରି ଚାଲିଲେ କର୍ତ୍ତବ୍ୟ ପଥରେ, ଚାରିଆଡ଼େ ବାଜିଉଠିଲ ରଣ ଦୁନ୍ଦୁଭି ।

ଯଥା ସମୟରେ ଯୁଦ୍ଧ ଆରମ୍ଭହେଲା, ଶାସ୍ତ୍ର କହେ—

ଯାହାକୁ ରଖିବ ଅନନ୍ତ
କି କରିପାରେ ବଳବନ୍ତ ।

ଠିକ୍ ସେହିପରି ପାଟଣା ଗଡ଼କୁଟ ମହାଦେବୀ ସାହା । ସେ ଆଜ ହାରନ୍ତେ ବା କାହିଁକି ? ଦୀର୍ଘ ୭ ଦିନ ସାତ ରାତି ଯୁଦ୍ଧପରେ ଅଧେରୁ ଊର୍ଦ୍ଧ୍ୱ ସୈନ୍ୟ ରାଜା ତ୍ରିପୁର ସୁନ୍ଦରଙ୍କର ମଲେ । ଶେଷରେ ତ୍ରିପୁର ସୁନ୍ଦରକୁ ରାଜା ଏବଂ ମନ୍ତ୍ରୀଙ୍କ ପରାମର୍ଶ କ୍ରମେ ବନ୍ଦୀ କରାଗଲା । ସେତେବେଳେ ରାଜା ଏବଂ ମନ୍ତ୍ରୀକଥା ଛଳରେ ହସିହସି କହିଲେ —ଯୁଗେଯୁଗେ ଧର୍ମଶାଶ୍ୱତ, କଥାରେ ଅଛି—

"ଧର୍ମର ଜୟ
ପାପର କ୍ଷୟ"



## ତାନ୍ତ୍ରିକ ଭୂତନାଥ ସହ ସାକ୍ଷାତ

ରାଜା ମରୁତ ନିପୁର ସୁନ୍ଦରକୁ ଯୁଦ୍ଧ କ୍ଷେତ୍ରରୁ ବନ୍ଦୀକରି ନେଇଗଲେ । କ'ଣ କରିବେ କ'ଣ ନ କରିବେ ଏ ବିଷୟରେ ଏକ ସୁଚିନ୍ତିତ ମତାମତ ଲାଗି ମନ୍ତ୍ରୀଙ୍କୁ କହିଲେ । ମନ୍ତ୍ରୀ କ୍ଷଣ କାଳ ଚିନ୍ତାକରି କହିଲେ ମହିମା, କୁକୁର ସିନା ଆମକୁ କାମୁଡ଼ିଲା, କିନ୍ତୁ ଆମେ ଯଦି କୁକୁରକୁ କାମୁଡ଼ିବା ତେବେ ଦୁନିଆଁ ଆମକୁ କ'ଣ କହିବ ।

— ତେବେ ସେ କଥା ଯାହା ହେଉ, ରାଜା ନିପୁର ସୁନ୍ଦରକୁ କରିବା କ'ଣ ? କହିଲେ ରାଜା ମରୁତ ।

ମନ୍ତ୍ରୀ କାଳ ବିଳମ୍ବ ନକରି ଚିନ୍ତାକଲେ, ବାସ୍ତବିକ ରାଜା ନିପୁର ସୁନ୍ଦରକୁ କ'ଣ କରିବା ଉଚିତ । କାରଣ ସେତ ଏମିତି ସେମିତି ଲୋକ ଜଣେ ନୁହଁ ଯେ ତାକୁ ଯାଇଗ୍ରା ତାହା ଦଣ୍ଡ ବିଧାନ କରିଦେଲେ ଚଳିଯିବ । ତେଣୁକରି ଗୋଟାଏ କାମ କରା-ଯାଉ ନିପୁର ସୁନ୍ଦରକୁ ଏଠାକୁ ଡକାନ୍ତୁ ମହିମା । ତାହା ପରେ ଯାହା ହେବ ବିଚାର କରି କରିବା । ରାଜା ଏହାଶୁଣି ଆଉ କାଳ ବିଳମ୍ବ ନ କରି ଉପର ହାତରେ ଡକାଇଲେ ନିପୁର ସୁନ୍ଦରକୁ । ରାଜା ନିପୁର ସୁନ୍ଦର ଆସି ମଥାନତ କରି ଠିଆ ହେଲା ।

ମଥାନତ କରି ଠିଆହେଲା ସିନା କିନ୍ତୁ ତାର ମନ ଭିତରେ ଜଳୁଥିଲା ପ୍ରତିହିଂସାର ବହ୍ନି । କପଟ ଭାବରେ ସେ ମରୁତ ସେନ ଠାରୁ ପ୍ରତିଶୋଧ ନେବ ମନ ମଧ୍ୟରେ ତାହାର୍ଟ୍ଟ ଯୋଜନା

କରୁଥାଏ । ଏଣେ ମୋହମାୟା ଶୂନ୍ୟ ରାଜା ମନ୍ତ୍ରୀଙ୍କୁ ଆଦେଶ ଦେଲେ ।

ମହାମନ୍ତ୍ରୀ ରାଜା ତ୍ରିପୁର ସୁନ୍ଦରଙ୍କର ଲୌହ ଶୃଙ୍ଖଳ ଉନ୍ମୋଚନ କରିଦିଅ ।

—ମନ୍ତ୍ରୀ କିଛି ନକହି ଖୋଲିଦେଲେ ।

ମହେନ୍ଦ୍ରସେନ ଅବିଳମ୍ବେ କହିଲେ—ରାଜା, ତୁମେହିଁ ରାଜା ହୋଇ ରହିବ । କିନ୍ତୁ ମୁଁ ଜାଣୁଛି ତୁମେ ଅନ୍ୟ କାହା ବୁଦ୍ଧିରେ ପଡ଼ି ଏହା କରୁଛ । କିନ୍ତୁ ମନେରଖ ରାଜାହୋଇ ଯଦି ରାଜୋଚିତ ଧର୍ମ କର୍ମ ନ୍ୟାୟ ଅନ୍ୟାୟ ଆଦି ଭୁଲିଯାଅ ତେବେ ଶେଷ ପରିଣତି କ'ଣ ହେବ କୁହ । କି ଅଭିପ୍ରାୟ ନେଇ ମୋ ସହ ସମର ଆରମ୍ଭ କରିଥିଲ । ଏହା ଶୁଣି ତ୍ରିପୁର ସୁନ୍ଦର ବୋକାଙ୍କ ପରି ନୀରବ ହୋଇ ଠିଆ ହେଲେ । ଏହାହାବି ରାଜା ମହେନ୍ଦ୍ରସେନ୍ ଆଉ କିଛି ନ କହି ମନ୍ତବ୍ୟ ଦେଲେ ।

ଯାଅ, ମନେରଖ ହିଂସା ପ୍ରଣୋଦିତ ଚରିତ୍ରର କଦାପି ଜୟ ନୁହେଁ । ତେଣୁ ହିଂସା କରି ଜଣକ ସହ ଲଢେଇ କରିବା ମାନେହିଁ ନିଜେ ବଳହୀନ ବୋଲି ପ୍ରମାଣ କରିବା । ତେଣୁ ମୋର ଅନୁରୋଧ ରଖି ସୁଖରେ ଯାଇପାର । ଏତିକି କହି ମନ୍ତ୍ରୀ ମୁକୁନ୍ଦଙ୍କୁ କହିଲେ —ମହାମନ୍ତ୍ରୀ ଯାଅ ତୁମେ ନିଜେ ନେଇ ରାଜା ତ୍ରିପୁର ସୁନ୍ଦରଙ୍କୁ ତାଙ୍କ ଉଆସରେ ଛାଡ଼ି ଆସ ।

ରାଜାଙ୍କ ଆଦେଶକୁ ଅବଜ୍ଞା ନକରି ମନ୍ତ୍ରୀ ମୁକୁନ୍ଦ ଆନନ୍ଦ ସହକାରେ ତ୍ରିପୁର ସୁନ୍ଦରଙ୍କୁ ଧରି ଚାଲିଲେ । ସୁସଜ୍ଜିତ ଗଜରେ ବସାଇ ଆନନ୍ଦ ଉଲ୍ଲାସରେ ନିଜ ରାଜ୍ୟରୁ ନେଇ ତାଙ୍କ ରାଜ୍ୟରେ ଛାଡ଼ିଆସିଲେ ।

ସେଠାରେ ତ୍ରିପୁର ସୁନ୍ଦର କ'ଣ ଭାବୁଥିଲା କେଜାଣି । ନିଜ ରାଜ୍ୟରେ ଆସି ପହଞ୍ଚିବା ମାତ୍ରେ ମନ ମଧ୍ୟରେ ତାର ପୁଣି ପୂର୍ବର ଦୁଷ୍ଟ ବୁଦ୍ଧି ଉଙ୍କି ମାରିବାକୁ ଲାଗିଲା । କ'ଣ କରିବ କରିବ ବୋଲି ମନ ମଧ୍ୟରେ ଚିନ୍ତାକରି କଷ୍ଟେ ମଷ୍ଟେ ସେଦିନ ରାତି ଯାପନ କଲା । ମନରେ ମାତ୍ର ଗୋଟିଏ ଚିନ୍ତା କିପରି ରାଜା ମନ୍ମଥସେନ୍‌ର ନାମକୁ ମାଟିରେ ମିଶାଇ ନିଜ ନାମକୁ ଟେକ ରଖିବ । କିନ୍ତୁ ରାଜା ମନ୍ମଥଙ୍କର ରାଜୋଚିତ ବ୍ୟବହାର ତଥା ଅନ୍ୟ ଅନ୍ୟ ସବୁକିଛି ଭୁଲିଗଲା ।

କ୍ରମେ ରାତି ପାହି ସକାଳ ହେଲା । ସୂର୍ଯ୍ୟଦେବ ସବୁଦିନ ପରି ପୂର୍ବ ଆକାଶରେ ଉଦୟ ହେଲେ । ଚଷା ପୁଅ ଚାଷପାଇଁ ଧାଇଁ ଗଲା କ୍ଷେତକୁ, କୂଳ ଭୁଆଣୁଣୀ ମାନେ ସ୍ନାନ ସାରି ଯେଯାହା କାମରେ ବ୍ୟସ୍ତହୋଇ ଗଲେ । ଏଥିର ଆଉ କାଳ ବିଳମ୍ବ ନକରି ରାଜା ତ୍ରିପୁର ସୁନ୍ଦର ଦୂତକୁ ଡକାଇ ପଠାଇଲା । ଦୂତ ତତ୍‌କ୍ଷଣାତ୍ ଆସି ପହଞ୍ଚି ରାଜାଙ୍କୁ ଯଥାରୀତି ସମ୍ମାନ ଦେଖାଇ କହିଲା ।

—ଆଜ୍ଞା ଦିଅନ୍ତୁ ମଣିମା '

—ଯାଅ, ମନ୍ତ୍ରୀଙ୍କୁ ଡାକିଆଣ !

—ଯଥା ଆଜ୍ଞା କହି ଚାଲିଗଲା ଦୂତ ।

ମହାମନ୍ତ୍ରୀ ତତ୍‌କ୍ଷଣାତ୍ କହି ଚାଲିଲେ, ଅବଶ୍ୟ ଦୂତକୁ ନୁହଁ ମନେ ମନେ କହିଲେ—ଆରେ ମହାରାଜ ଯେ ଗତକାଲି ମନ୍ମଥ ସେନ ନିକଟରେ ବନ୍ଦୀଥିଲେ । କିନ୍ତୁ ଆଜି ଏ କ'ଣ ରାଜା ଏଠାକୁ ଫେରି ଆସିଛନ୍ତି । ହେଉ, ଆଉ କିଛି ଚିନ୍ତା ନକରି ଯାଡେ ଯାଡେ ଚାଲିଲେ ରାଜାଙ୍କ ପାଖକୁ । ରାଜା ତେବେଶ ମନ୍ତ୍ରୀକୁ ଡକାଇ କିପରି

ରାଜା ମରୁତ ସେନର ସର୍ବନାଶ କରିବେ ସେହିକଥା ଚିନ୍ତା କରୁ-ଥାନ୍ତି । ଠିକ୍ ଏହି ସମୟରେ ମନ୍ତ୍ରୀ ଆସି ଉପସ୍ଥିତ ହେଲେ ।

ରାଜା ମହାମନ୍ତ୍ରୀଙ୍କୁ ଦେଖି ପ୍ରଶ୍ନ କଲେ ଗତକାଲି ଠାରୁ ଆସିଲାଣି ।

— ମୁଁ ତ ଏକଥା ଜାଣିନ ! ଆଶ୍ଚର୍ଯ୍ୟରେ କହିଲେ ମନ୍ତ୍ରୀ ।

—ହେଉ ।

—ଆଚ୍ଛା ଆପଣ · · · ·

—ଆସିଲ ଖପର, ଏଇଆଡ !

—ହଁ ।

—ନିଜ ବୁଦ୍ଧି ବଳରେ !

—ହଁ ଠିକ୍ କଥା ।

—ତେବେ ବର୍ତ୍ତମାନ !

— କ'ଣ କୁହନ୍ତୁ ?

କଳେ ବଳେ କଉଶଳେ ଯେମିତି ଭାବରେ ହେଉନା କାହିଁକି ସେହି ରାଜା ମରୁତ ସେନ୍ ଠାରୁ ଆମେ ପ୍ରତିଶୋଧ ନେବାପାଇଁ ପଡ଼ିବ । ଆମଠାରୁ ତାର ବଳ ଅବଶ୍ୟ ବେଶୀ କିଛି ନୁହେଁ । ତେବେ ସେ ଖପର ଭାବରେ ମୋତେ ଜଣିଲି ମୁଁ କିଛି ସୁଧା ଜାଣି ପାରୁନ । ମୋର ମନେ ହୁଏ ଏ ମଧ୍ୟରେ କିଛି କିଛି ରହସ୍ୟ ରହିଛି ।

ଏକଥା ଶୁଣି ମୂର୍ଖ ମନ୍ତ୍ରୀ କିଛିକାଳ ନାନା ପ୍ରକାର ଚିନ୍ତା କଲ । କ'ଣ କରିବ । ରାଜାଙ୍କୁ କ'ଣ ଉତ୍ତର ଦେବ ବୋଲି ଭାବି କହିଲା—ମହାରାଜ ରାଜା ମରୁତ ସେନ୍ ପ୍ରତ୍ୟେକ ଦିନ ପ୍ରଭାତରେ କ'ଣ କରେ ଜାଣନ୍ତି ?

—କ'ଣ ଗମ୍ଭୀର ଭାବରେ କହିଲେ ରାଜା ।

ପ୍ରତି ପ୍ରଭାତରେ ସ୍ନାନ ଶୌଚାଦି ଶେଷକରି ଦେବୀ ବିରଜାଙ୍କ ପୂଜା ଆରାଧନା କରନ୍ତି ବୋଲି ଗୁପ୍ତଚର ଠାରୁ ଶୁଣିଛି । ତେଣୁ ମୋର ଅନୁମାନ ରାଜା ବୋଧହୁଏ କୌଣସି ତାନ୍ତ୍ରିକ ଠାରୁ ବର ପ୍ରାପ୍ତ ହୋଇଛନ୍ତି । ଯାହାଦ୍ୱାରା ସେ ଦେବୀଙ୍କୁ ପୂଜାରାଧନା କରି ଜିଣି ଯାଉଛନ୍ତି । ଏହାଶୁଣି ରାଜା ମନ୍ତ୍ରୀ ଚୁପ୍ ନହେବା ପୂର୍ବରୁ କହିଲେ—ତେବେ ଆମେ ଏହାର କିଛି ହେଲେ ଗୋଟାଏ ମିମାଂସା କରିବା ଉଚିତ୍ ।

—ହଁ ମିମାଂସା କରିବାକୁ ହେଲେ ଆମେ ମଧ୍ୟ ଗୋଟିଏ ତାନ୍ତ୍ରିକ ପାଖକୁ ଯାଇ ଏ ବିଷୟରେ ଅତି ଆନନ୍ଦ ସହକାରେ ପରାମର୍ଶ କରିବା ।

—ହଁ ଠିକ୍ କଥା

—ତେବେ ଆଜିହିଁ କରିବା ।

—କେଉଁ ତାନ୍ତ୍ରିକ ପାଖରେ

—କିଏ ଆଉ ଭୂତନାଥ ।

—ଭୂତନାଥ କ'ଣ ବଡ଼ ତାନ୍ତ୍ରିକ ?

—ରାଜ୍ୟ ମଧ୍ୟରେ ସିଏତ ସବୁଠାରୁ ବଡ଼ ।

—ଚାଲ ସେଇଠାକୁ ଯିବା !

ଏମିତି ରାଜା ଏବଂ ମନ୍ତ୍ରୀ ଦୁହେଁଯାକ ବିଚାର କରି ସ୍ଥିରକଲେ ତାନ୍ତ୍ରିକ ଭୂତନାଥ ସହ ସାକ୍ଷାତ କରିବା, ଆଉ କାଳ ବିଳମ୍ବ-ନକରି ରାଜା ଏବଂ ମନ୍ତ୍ରୀ ବାହାରି ପଡ଼ିଲେ ତାନ୍ତ୍ରିକ ଭୂତନାଥ ପାଖକୁ କାରଣ ମନରେ ତାଙ୍କର ପ୍ରତି ହିଂସାର ବହ୍ନି ଦାଉ ଦାଉ

ହୋଇ ଜଳୁଥିଲା, କଳେ ବଳେ କଉଶଳେ ତାକୁ କପଟି ହଇରାଣ କରିବେ କେବଳ ଏଇ ଚିନ୍ତା ।

ଏମିତି ବାରଆଡ଼ୁ ତେରକଥା ରାଜା ମନ୍ତ୍ରୀ ଦୁହେଁଯାକ ଚିନ୍ତା-କରି ଯାଉ ଯାଉ ତାନ୍ତ୍ରିକ ଭୂତନାଥର ଗୁହା ପାଖରେ ଦୁଇଜଣ-ଯାକ ପହଞ୍ଚିଗଲେ ଦୂରରୁ ଦେଖିଲେ ତାନ୍ତ୍ରିକ ଜଣକ ଦେଖିବାକୁ ଅତି ଭୟଙ୍କର, ରାଜା ଏହା ଦେଖି ମନେ ମନେ ବହୁତ ଆନନ୍ଦ ଅନୁଭବ କଲେ, ମନ୍ତ୍ରୀ ତତ୍‌କ୍ଷଣାତ୍ କହିଲେ ।

—ମହିମା ବର୍ତ୍ତମାନ ଭୂତନାଥ ଯୋଗ ସାଧନ କରୁଛି । ତାକୁ ବ୍ୟାଘାତ ସୃଷ୍ଟି କଲେ ସେ ରାଗିଯିବ ତେଣୁ କ୍ଷଣକାଳ ମାତ୍ର ଅପେକ୍ଷା କରନ୍ତୁ । ତାର ଯୋଗ ଭାଙ୍ଗିଲେ ତାକୁ ଆମେ ଆମକଥା ଜଣାଇବା ।

ରାଜା ମନ୍ତ୍ରୀଙ୍କ କଥା ଶୁଣି ଚୁପ୍‌ଚାପ ହୋଇ ନୀରବ ସହକାରେ ବସି ରହିଲେ । ଘଣ୍ଟାଏ ଗଲା ଦୁଇ ଘଣ୍ଟାଗଲା, କ୍ଷଣକୋପୀ ରାଜା ମନେ ମନେ ବିରକ୍ତ ହୋଇ ଉଠିଲେ, ଠିକ୍ ଏହି ସମୟରେ ଯୋଗଭାଙ୍ଗି ଭୂତନାଥ ଉଠିଲା । ତା ପୂର୍ବରୁ ଭୂତନାଥ ଧ୍ୟାନ-ବଳରେ ରାଜାଙ୍କ ଆସିବା କଥା ସହିତ ସେ ଯେ କାହିଁକି ଆସିଛନ୍ତି ଏକଥା ଜାଣି ପାରିଥିଲା, ଆଉ ମୁହୂର୍ତ୍ତିକ ପାଇଁ କାଳକ୍ଷେପ ନକରି ରାଜାଙ୍କୁ ନିଜର ଆତିଥ୍ୟତା ସ୍ୱୀକାର କରିବା ପାଇଁ ଅନୁରୋଧ କଲା ।

ରାଜା ନିଜର କାର୍ଯ୍ୟସିଦ୍ଧି ପାଇଁ ଆସି ଥିବାରୁ ନିଜ ରାଗକୁ ଚାପିରଖି ଭୂତନାଥର ଆତିଥ୍ୟତା ସ୍ୱୀକାର କରିବା ପରେ ଦୁହିଁଙ୍କୁ ବସାଇ ଭୂତନାଥ କହିଲା ମହିମା, ଆପଣ ଯେଉଁଥିପାଇଁ ଏଥିନ ଭୂତନାଥର ଦ୍ୱାରସ୍ଥ ହୋଇଛନ୍ତି ତାହା ସାଧନ କରିବା ଅସମ୍ଭବ ।

—ଅସମ୍ଭବ କାହିଁକି ?

—ଆପଣ ଜାଣନ୍ତି ରାଜା ମରୁଭୂମିର ମାଆ ବାଂଧାବାସିନୀ ବରଜାଙ୍କ ଉପାସକ, ସେ ବର ପ୍ରାପ୍ତି ହୋଇଛନ୍ତି ନ୍ୟାୟରେ ନଷ୍ଟେ ଜିଣିବ । ତେଣୁ ଆପଣ ତା'ସହ ଯେତେ ଯାହା କରି ଅନ୍ୟାୟ ଲଢ଼େଇ କଲେ ହାରିବେ, ଏହାଶୁଣି ରାଜା ସ୍ତମ୍ଭୀଭୂତ ହୋଇ କହିଲେ—ତେବେ ବର୍ତ୍ତମାନ ମୁଁ କ'ଣ କରିବ ମହାମନ୍ତ୍ରୀ କିଛି ଚିନ୍ତାକରି ପାରୁନାହିଁ ।

ରାଜାଙ୍କ ମୁଖରୁ କଥା ନସରୁଣୁ ଭୂତନାଥ କହିଲେ ସନ୍ଧି କରନ୍ତୁ ସେ'ତ ଆପଣଙ୍କ ସହ କୌଣସି ଅନ୍ୟାୟ କରିନାହିଁ, ତେଣୁ ନ୍ୟାୟରେ ସନ୍ଧି କରିବାହିଁ ଭଲ, ନଚେତ୍ ଆପଣ ନିଜେ ଅପଦସ୍ତ ହେବେ, ବିପୁର ସୁନ୍ଦର ଏହାଶୁଣି ଭୂତନାଥ ବାଣୀର ସତ୍ୟତା ଉପଲବ୍ଧି କରି ଫେରିଆସି ସନ୍ଧିବାର୍ତ୍ତା ପ୍ରେରଣା କଲେ, ଆଗପରି ନିଜର ପ୍ରକୃତି ନରହି ବେଶ୍ ବଦଳିଗଲା, ପ୍ରଜାମାନେ ଭଲ କହିଲେ, ତେଣୁ କଥାରେ ଅଛି—

ଭଲକୁ ମଣିଷ ଭଲ କହଇ
ମନ୍ଦଠାରୁ ସଦା ଦୂରେ ରହଇ ।



## କୃପଣର ପରିଣତି

ସେ ଅନେକଦିନ ତଳରକଥା । ଶଙ୍କରପୁରରେ ବାସ କରୁଥିଲେ ସୁର ଦାସ । ତାଙ୍କର ପରିବାରସହ ସୁର ଦାସ ଅତି କୃପଣ ଥିଲେ । ଘରଦ୍ୱାର ମୂହଁକୁ ଖିଦାର ପିଲଟିଏ ମଧ୍ୟ ଉଠାଇ

ଦେଉ ନଥାଏ । ଘର ଗୃହ ଉପରେ କୁଆଁଟିଏ ବସାଇ ଦେଉ ନଥାଏ । ଘରେ ଯଦି ଭଲକରି କିଛି ହେଉଥାଏ । ସେ ତାକୁ ବାରଣ କରେ । ଦିନରେ ଯଦି ତାର ସ୍ତ୍ରୀ ଦୁଇଥର ଝାଡ଼ା ଯାଏ । ତାହାଲେ ସେ ସ୍ତ୍ରୀକୁ ସନ୍ଦେହ କରେ । ଜମିବାଡ଼ି ଅନେକ ଅଛି । ସୁର ଦାସ ତାର ଦାଇତ୍ବ ସବୁ ନିଏ । କୌଣସି ଜମି ଭାଗ ଦିଏ ନାହିଁ ।

ସବୁବେଳେ ନିଜ ସ୍ତ୍ରୀ ଉପରେ ତାଗିଦ୍ କରେ ଯେ ପୁଅ ହେବ । ଯଦି ଝିଏ ହୁଏ ତେବେ ତତେ ଘରୁ ତଡ଼ିଦେବି । ଏଣୁ ସ୍ତ୍ରୀ ତାର କେତେ ଠାକୁରଙ୍କୁ ଡାକୁଥାଏ । ହେ ପ୍ରଭୁ ମୋତେ ପୁଅଟିଏ ଦିଅ ।

ସୁର ଦାସ ପରି କୃପଣ କେହି ନଥିଲେ । ଭଲକରି ଗଣ୍ଡେ ଗଣ୍ଡେ ଖାଇବା କମ୍ବା ଭଲକରି ଖଣ୍ଡେ ପିନ୍ଧିବାର କେହି କେବେ ଦେଖି ନଥିଲେ ତାର ସ୍ତ୍ରୀ ଯଦି ପଚାରେ ଯେ ତୁମେ ଏତେ ଧନ ରଖି କ'ଣ କରିବ ? ସେ କହେ—ମୁଁ ଏ ସବୁଧନ ରଖି ମୋର ନାତିକୁ ଦେବି । ଏ ଧନର ମାଲିକ ମୋର ନାତି ହେବ । ଆଉ ମୋ ପୁଅର ପୁଅ ନାତି । କିନ୍ତୁ ଝିଅର ପୁଅ ନାତି ନୁହେଁ । ଏଣୁ ତୁମର ଯେପରି ପୁଅ ହୁଏ । ହେଲେ—

ତା'ର ସ୍ତ୍ରୀ ଠାକୁରଙ୍କୁ ଡାକେ କିନ୍ତୁ କିଛି ମାନସିକ କରେ ନାହିଁ । କାରଣ ସେତ ତାକୁ ପୂରଣ କରିପାରିବ ନାହିଁ । ଠାକୁରଙ୍କୁ ଗୁଡ଼ ଟିକେ ଭୋଗଦେଲେ ସୁର ଦାସ ଚିଡ଼େ ଏଣୁ ଘରେ ଠାକୁର କମ୍ବା ଠାକୁରଙ୍କ ଫଟଟିଏ ମଧ୍ୟ ରଖେ ନାହିଁ ।

ଏମିତି ଦିନୁଦିନ ବରେ ସୁର ଦାସର ପୁଅଟିଏ ହେଲା ସୁର ଦାସ ଘର ଖୁସିଥାଏ । ହେଲେ ତାର ସ୍ତ୍ରୀ ମନରେ ଟିକେହେଲେ

ସୁଖ ନଥାଏ । କାରଣ ଗାଁରେ ଯାହାର ପୁଅଟିଏ କି ଝିଅଟିଏ ହେଉଥାଏ । ତାହାଲେ କେତେ କଣ ବାଜା ମାଇକ, ପୂଜା ହେଉଥାଏ । କେତେ ନୂଆ ଜନିଷ ହେଉଥାଏ । ସେମାନେ କେତେ ଖୁସି ହେଉଥାନ୍ତି । ଏ ସବୁତ ସୁର ଦାସ ଘରେ ହେବ ନାହିଁ । ତେଣୁ ମନ ଖୁସିକରିବା କ'ଣ ଦରକାର ।

ସୁର ଦାସ ତାର ପୁଅଟିର ନାମ ରଖିଲା ରମେଶ । ଗ୍ରୋଟବେଳୁ ସେ ମାଆର କ୍ଷୀରଛଡ଼ା ଅନ୍ୟକିଛୁ ଖାଏ ନାହିଁ । ସୁର ଦାସ କେବେ ବାହାରୁ ଟଫିକ୍ କି ସାଗୁ କି କିଛି ଆଣୁ ନଥିଲା । ଏଣୁ ସେ ମା' କ୍ଷୀର ଖାଇ ବଢ଼ୁଥାଏ । ଯେମିତି ଗୋଟେ ବର୍ଷ ହୋଇଛି ସେମିତି ତାକୁ ଭାତ ଖୋଇଦେଲେ । ପିଲାଟି ଭାତ ଖାଇଲା ।

ଏମିତି ତାକୁ ୬ବର୍ଷ ହୋଇଗଲା । ପିଲାଟି କିଛି କିଛି ଜାଣିଲା ସେ ପାଠ ପଢ଼ିବ ବୋଲି ଅଝଟ କଲା । ସୁର ଦାସ କହିଲା ସ୍କୁଲକୁ ଗଲେ ପଇସା ଖର୍ଚ୍ଚ ତେଣୁ ସେ ନିଜେ ତାକୁ ଘରେ ପଢ଼ାଇଲା । ମିଶାଣ, ଫେଡ଼ାଣ, ଗୁଣନ, ହରଣ, ଶିଖିଗଲା । ତା'ପରେ ଅକ୍ଷର ଲେଖା ଶିଖିଗଲା ପରେ ପାଠ ବନ୍ଦ । ତା'ପରେ ପୁଅକୁ କାମରେ ଲଗାଇଲା ରମେଶ ବଡ଼ ହୋଇଚାଲା ପରେ ସେ ଜାଣିପାରିଲା ତା'ର ବାପାର ଗୁଣ ସେ ତାର ବାପାଙ୍କର ଗୁଣରେ ଦୁଃଖ ଅନୁଭବ କଲା । ସେ ପଚାରିଲା—

—ବାପା ! ତୁମେ ପଇସା ସବୁ କେଉଁଠି ରଖୁଛ ?

—ତୋର କ'ଣ ଦରକାର ?

—ନାଁ ତାକୁ କିଏ ଭୋଗ କରିବ ?

—ଯିଏହେଲା ତୋର ସେଥିରେ କ'ଣ ଅଛି ?

— ନାଇଁ କିଛି ନୁହେଁ···କହି ଚୁପ୍‌ହୋଇ ରହିଲା···

ସୁର ଦାସ କ'ଣ କରେ ତାର ଯେତେକ ସୁନା, ରୂପା, ଆଦି ଅଳଙ୍କାରଟକ ନେଇ ଗୋଟେ ଏକାଟିଆ ନିର୍ଜନ ସ୍ଥାନରେ ଗାତ ଖୋଳି ଗୋଟେ ଘରପରି କରିଥାଏ । ସେଇଘର ଭିତରେ ନେଇ ରଖେ । ସେ ସେଠାରେ ଧନ ରଖିଚି ବୋଲି କାହାକୁ କହେ ନାହିଁ ।

ରମେଶକୁ ଯେତେବେଳେ ୧୮ବର୍ଷ ସୁର ଦାସ ତାକୁ ଧନ ଲୋଭରେ ହରିପୁରର ଗୋପି ମହାନ୍ତିଙ୍କ ଝିଅ ସହିତ ବାହା କରାଇଦେଲେ । ରମେଶ ପିନା ବାହା ହୋଇଗଲା ହେଲେ ସେ ଖୁସି ନଥାଏ, କାରଣ ତାଙ୍କଘର ଭାରି କୃପଣ ।

ବାହାଘରରେ ମାତ୍ର ୫୦୦ ଟଙ୍କା ଖର୍ଚ୍ଚ ହେଲା ସୁରଦାସର । ସେଥିରେ ସେ ଭାରି ଦୁଃଖିତ ଥାଏ । କୁଆଡୁ ଆସେ ସେ ପଇସା, ହେଲେ । ସେ ଟିକେ ଶାନ୍ତି ଅନୁଭବ କରୁଥାଏ ।

ବାହାଘର ଦୁଇବର୍ଷ ପରେ ରମେଶର ଗୋଟେ ପୁଅଟିଏ ହେଲା । ରମେଶ ନିଜେ ରଖିଥିବା ପଇସାରେ ପୂଜା ଅର୍ଚ୍ଚନା କଲା । ଗାଁର ଲୋକଙ୍କୁ ଡାକି ଖୋଇଲା । ହେଲେ ସୁରଦାସ ଚିଡୁଥାଏ । ସେ ପଇସା ରଖି ଦେଇଥିଲେ କ'ଣ ହୋଇଥାନ୍ତା ? ବେକାରରେ ଏତେ ଖର୍ଚ୍ଚ ହେଉଛି । ଏମିତି ବୁଢା ଖାଲି ଚିଡୁଥାଏ । ତା'ପରେ ନୂଆ ଲୁଗା'ପଟା ଦେଖି ଆହୁରି ବିମୁଖ ହେଉଥାଏ ।

ଏମିତି ଚିଡା ପ୍ରକୃତି ଯୋଗୁଁ ରମେଶର ସ୍ତ୍ରୀ ମଧ୍ୟ ବିରକ୍ତ ହେଉଥାଏ । କ'ଣ ବା କରିବ । ଦିନେ ରାତିରେ ସେ ତାର ସ୍ୱାମୀକୁ କହିଲା - ; ଶୁଣୁଛ ?

—କ'ଣ ?

— ତୁମ ବାପା···

—ହିଁ କ'ଣ ହେଲା ?

— ଘଗିବନ୍ଧ ।

—ହିଁ କ'ଣ କୁହ ।

—ତୁମ ବାପା ଭାରି କୃପଣ । ମୁଁ ଦେଖୁଛି ଆମେ ଯଦି ଏଠି ରହିବା ତେବେ ପିଲାଟି ମଣିଷ ହେବନାହିଁ । ସବୁବେଳେ ଗାଳୁଛନ୍ତି ।

—କ'ଣ ପାଇଁ ?

—ବାହାରୁ ଯଦି କ୍ଷୀର ଟିକେ କିଣିଆଣି ଦେଉଛି ତେବେ ଚମକୁଛନ୍ତି ପଇସା କେଉଁଠୁ ଆସିଲା···ମତେ ଏସବୁ ଭଲ ଲାଗୁନି ।

—ଆଚ୍ଛା···ଆଉ ଦୁଇ ଚାରିବର୍ଷ ମାତ୍ର ଜାକ ଚଳିଯାଅ ।

ସେତ ବୁଢ଼ା ହେଲେଣି ଆଉ କେତେଦିନ ବଞ୍ଚିବେ ? ତାଙ୍କ ଘରେ ଆମେ ଭଲରେ ରହିବା ।

—ହଉ ତୁମ ଇଚ୍ଛା ଏହାକହି ଦୁହେଁ ଚୁପ୍ ରହିଲେ ।

ସୁରଦାସ ବୁଢ଼ା ହୋଇଗଲାଣି । ସେ କେବଳ ଧନ ଉପରେ ନଜର ରଖିଥାଏ । ତା'ର ନାତିକୁ ଭାରି ଭଲପାଏ । ସମୟ ପାଇଲେ ନାତି ସହିତ ଖେଳେ । ବାହାରକୁ କେବେ ଛାଡ଼େ ନାହିଁ । କାରଣ ବାହାର ପିଲାଙ୍କ ସହିତ ଖେଳିଲେ କେତେବେଳେ ପଡ଼ି ମୁଣ୍ଡ କାନ ଖଣ୍ଡିଆ କରିବ ଡାକ୍ତର ବୈଦ୍ୟ ଲୋଡ଼ା । ପଇସା ଖର୍ଚ୍ଚ

ହେବ । ଏଣୁ ସେ କେବେ ତାକୁ ବାହାରକୁ ଛାଡ଼େ ନାହିଁ । ରମେଶ ଯଦି କହେ ପିଲାଟିଏ ରଖିବା । ସେ ତାର ଦାଇତ୍ଵ ବୁଝିବ ।

ବୁଢ଼ା ମନାକରେ ନାଇଁ ମୁଁ ଅଛି । ଗୃହକର ! ସେ ଆସି କ'ଣ କରିବ । ବେକାର ପଇସା ଖର୍ଚ୍ଚ ହେବ । ପିଲାଟି ମଧ୍ୟ ବୁଢ଼ା ସହିତ ଖେଳେ । ବୁଢ଼ାର ଦାଢ଼ୀ ଟାଣିଦିଏ । କଣ୍ଠ ଟାଣିଦିଏ । ବୁଢ଼ାର କାନ ମୋଡ଼ିଦିଏ । ବୁଢ଼ାର ବାଡ଼ି ଛଡ଼ାଇ ନେଇ ସେଥିରେ ପିଟେ । ବୁଢ଼ାକୁ ଏସବୁ ମଜା ଲାଗେ ସେ କୃତ୍ରିମ ରାଗରେ କହେ —ହିଁରେ ପୁଅ ଯାହାକୁ ଖୋଇ ପେଇ ଏତେବଡ଼ କଲି ସେତ ପଦେ ହେଲେ କହିନାହିଁ । ଆଜ ତୁ ତାଠାରୁ ଜନ୍ମ ନେଇ ମୋତେ ବାଡ଼େଇବୁନ କାହିଁକ ? ଆଜ ଠାରୁତ ଏମିତ ହେଲୁଣି । ଆହୁରି ବେଳ କାଳ ଅଛି । ଏମିତ ଦୁହେଁ ଖେଳନ୍ତି ।

ଥରେ କ'ଣ ହୋଇଛି, ପିଲାଟି ବୁଢ଼ାର ଦାଢ଼ୀକୁ ଏମିତ ଯୋରରେ ଟାଣିଦେଲା ଯେ ବୁଢ଼ା ପୂରା ରାଗିଗଲା ରାଗିଯାଇ ତାକୁ ଉଠାଇ ତଳେ କଚାଡ଼ି ଦେଲା ।

ପିଲାକ ଆଉ ସମ୍ଭାଳେ ଯୋରରେ କାନ୍ଦ ଉଠିଲା ତା'ର ମାଆ ଦୌଡ଼ି ଆସିଲେ । ସେତେବେଳେ ବୁଢ଼ା ଜାଗ୍ରତ ଗାଳ ଦେଉ-ଥାଏ ପିଲାଟିକୁ । ଏସବୁ ଦେଖି ତା'ର ମା' ରାଗିଗଲେ । ପିଲାଟିକୁ କୋଳକୁ ନେଇ ବୋଧ କଲେ । ସବୁଦିନତ ସମାନ ଯାଏ ନାହିଁ । ସେଦିନ ରମେଶ ଆସିଲା ବେଳକୁ ସେ କହିଲେ । ମୁଁ ଏ ଘରେ କ୍ଷଣେ ମାତ୍ର ରହିବନ । ପିଲାଟା କିଦୋଷ କଲା ଯେ ତୁମ ବାପା ତାକୁ ତଳେ କଚାଡ଼ି ଦେଲେ । ତା' ସାଙ୍ଗକୁ .....ଛାଡ଼ ତୁମେ ଏହାର ବିଚାର କର ।

ଏହା ଶୁଣି ରମେଶ ମଧ୍ୟ ମନ ଦୁଃଖ କଲା । ସେ କହିଲା ତୁମେ ବ୍ୟସ୍ତ ହୁଅ ନାହିଁ । କାଲି ସକାଳୁ ଆମେ ଏ ଘର ଛାଡ଼ି ଚାଲିଯିବା । ଏହାଶୁଣି ତାର ସ୍ତ୍ରୀ ବହୁତ ଖୁସି ହେଲା । ସତରେ ତା,ର ବାପା, ଓ ମା'ଙ୍କୁ ମଧ୍ୟ ଏକଥା ଜଣାଇଲା । ଏହାଶୁଣି ସୁରଦାସ କହିଲା ତୁମେ ଯାଅ, ହେଲେ ଘରୁ ଯେପରି କୌଣସି ପଦାର୍ଥ ମୋର ବାହାରକୁ ନଯାଏ । ଏପରିକି ପିନ୍ଧିବା ଲୁଗାଛଡ଼ା ଅନ୍ୟ କିଛି···

—କାହିଁକି,··· ··କହିଲା ରମେଶ···

—କାହିଁକି କ'ଣ, ଏସବୁ ମୋର ।

—ଏସବୁ କ'ଣ ତୁମେ କେବଳ ଭୋଗ କରିବ ।

—ହଁ···

—କାହିଁକି ? ଆମେ କ'ଣ ଏଥିରେ କିଛି ନୋହୁଁ ।

—ନାଁ······

—କାହିଁକି ? ?

—ମଲା ! ତତେ ଏତେଟିକୁ ଏତେଟିଏ କଲି । ତା'ପରେ ମୋର ସ୍ତ୍ରୀ, ତୋର ପିଲା ଏମାନଙ୍କୁ ପୋଷିଲି ପୁଣି ଆହୁରି ଲୋଭ । ଯଦି ଯିବ ତେବେ ଭଲକଥା ଯାଅ । କିନ୍ତୁ ଏ ଘରୁ କୌଣସି ଜିନିଷ ନେବା ମନା । ଯଦି ମୋକଥା ନମାନ ତେବେ ଯାହା ହେବାର କଥା ହେବ ।

ଏହାଶୁଣି ରମେଶ କ'ଣ କହିବ କିଛି ଠିକ୍ କରିପାରୁ ନଥାଏ । ଠିକ୍ ସେତିକି ବେଳେ ତା' ସ୍ତ୍ରୀ କହିଲା—ଏସବୁ ଯଦି ତୁମ ଧନ, ତୁମ ରୋଜଗାର, କିନ୍ତୁ ମୋ ବାପଘର ଜିନିଷ ତକ ମୁଁ ନେଇଯିବି ।

ଏକଥା ଶୁଣି ସୁରଦାସ ବା ଆଉ କ'ଣ କହିବ । ହିଉ ନେଇଯିବ ଆଉ କଅଣ ।

ତା' ପରେ ସିଏ ଯାହା ବାଟେ ଚାଲିଗଲେ ।

ପରଦିନ ସକାଳୁ ରମେଶ ତାର ସ୍ତ୍ରୀ ପିଲା ନେଇ ଘରୁ ବାହାରିଗଲା ତା'ର ବୂଢୀ ମା' କେତେ କାନ୍ଦିଲେ । ଯିବାପାଇଁ ମନା କଲେ କିନ୍ତୁ କିଛି ଫଳ ହେଲାନାହିଁ ।

ଏହାର କିଛି ଦିନ ପରେ ବୁଢୀ ପୁଅ, ବୋହୂ ନାତିଙ୍କୁ ଭାବି ଭାବି ଶଯ୍ୟାଶାୟୀ ହେଲା । ସୁର୍‌ଦାସ ବୁଢ଼ା ଏକା ହେଲେ ଡ଼ାକ୍ତର ବୈଦ୍ୟ କାହାକୁ ଡାକିଲା ନାହିଁ । ମନେ ମନେ ଭଗବାନଙ୍କୁ ଡାକୁଥାଏ । ପୁଅ ଗଲା, ବୋହୂ ଗଲା, ନାତି ଗଲା ହେଲେ ଏ ବୁଢ଼ୀଟା ଘୁଞ୍ଚିଲା ଯାଆନ୍ତାକି ।

ସିଏ ଏମିତି କଥା ଚିନ୍ତାକରି ପାରୁଛି । ସେ କେମିତି ଡାକ୍ତର ବୈଦ୍ୟ ଡାକିବ ?

ବୁଢ଼ୀ ଶେଷରେ ରୋଗରେ ପଡ଼ି ଛଟ, ପଟ ହୋଇ ମରିଗଲା । ଯେତେ କହିଲା ଥରେ ପୁଅକୁ ଡାକି, ଦେଖିବି । କିନ୍ତୁ ସୁରଦାସ ମନାକଲା । ହେଲେ ସେ ପୁଅକୁ ବହୁତ ଖୋଜିଲା କେତେ ଲୋକଙ୍କୁ ପଚାରିଲା । କେହି ହେଲେ ରମେଶର ଠିକଣା ଦେଲେନି । ଶେଷରେ ବୁଢ଼ୀ ହାୟ ! ହାୟ ! ହୋଇ ମରିଗଲା ।

ସୁର ବୁଢ଼ା ତା'ର ସୁଦ୍ଧି ହିଯୁ ସାରି ନିଶ୍ଚିନ୍ତ ହୋଇ ରହିଲା ।

ଏଣେ କ'ଣ ହୋଇଛି ରମେଶ ତା'ର ପିଲାପିଲା ସହିତ ଗାଁଠାରୁ କିଛି ଦୂରରେ ତା'ର ନାଁ ଗାଁ ବଦଳାଇ ଗୋଟେ ଘର ନେଇ ରହିଥାଏ । ନିଜ ସ୍ତ୍ରୀର ହାର, କାନଫୁଲ ବିକ୍ରୀକରି ପ୍ରେଟ

ଦୋକାନଟିଏ କରି ନିଜ ପରିବାର ଚଳାଉଥାଏ । ପିଲାଟିକୁ ସେଠାକାର ସ୍କୁଲରେ ପଠାଉଥାଏ । ପିଲାଟି ପ୍ରଥମରେ ପଢ଼ୁଥାଏ । ନାଁ ତା'ର, ଜନେଥନ୍ । ଘରେ ଡାକୁଥାନ୍ତି ଜନ୍ଟୁ ବୋଲି ଭାରି ସୁନ୍ଦର ହୋଇଥାଏ । ସବୁବେଳେ ହସ ହସ ମୁହଁ, ହେଲେ ତା'ର ଚଗଲାମି ପ୍ରକୃତି ଯାଇ ନଥାଏ । ଯଦି କୌଣସି ବୁଢ଼ାବୁଢ଼ୀ ଦେଖେ ତେବେ ତାଙ୍କ ସହିତ ଖଗୁଲେଇ ଲାଗେ । ଭାରି ମଜାଲାଗେ ତାକୁ, ୫, ୬ ବର୍ଷର ପିଲା । ବୁଦ୍ଧି କେତେ ?

ଏମିତି ରମେଶର ପରିବାର ଚାଲିଯାଏ । ରମେଶ କ'ଣ କରିଥାଏ ନା ସେ ତାର, ନାଁ ବଦଳାଇ ରମେଶ ଦାସ ବଦଳରେ, ରଜତ ମହାନ୍ତି ବୋଲିକରି ଦେଇଥାଏ । ତେଣୁ ତା'ର ଗାଁ ଲୋକେ ମଧ୍ୟ ଏଠାରେ ରମେଶ ଅଛି ବୋଲି ଜାଣିପାରନ୍ତି ନାହିଁ ।

ଏଣେ କ'ଣ ହୋଇଛି, ସୁର ଦାସ ବୁଢ଼ା ତା' ଘରେ ଏକା । ବୁଢ଼ା ବୟସରେ କେହି ପାଖରେ ନାହାଁନ୍ତି । ଘରଟା ତାକୁ ଖାଁ, ଖାଁ ଗୋଡ଼ାଏ, ବେଳେବେଳେ ପୁଅକଥା ମନେପଡ଼େ । ହେଲେ କେଉଁଠି ତା'ର ଠିକଣା ପାଉନାହିଁ । କ'ଣ କରିବ ? ବେଶୀ ନାତିକଥା ମନେପଡ଼େ । ସେ ତା'ର ନାତିକୁ ବହୁତ ଭଲ ପାଉଥିଲା । ହେଲେ ଜୀବନରେ ତାକୁ କେବେ ଚକଲେଟ ଟିଏ କମ୍ବା ବିସ୍କୁଟ ଟିଏ ଦେଇ ନାହିଁ । ଏବେ ମନେ ପଡୁଛି । ମନରେ ପଡ଼ିଲେ କ'ଣ ହେବ ?

ଦିନେ ବୁଢ଼ା କ'ଣ ଭାବି ଘରୁ ବାହାରିଗଲା । ଭାବିଲା କେତେ ଆଉ ଏ ଘରେ କୁଆଁଟି ଭଳି ପଡ଼ି ରହିଥିବ ? ଆଜିଯାଏ ବାହାରେ ଟିକେ ବୁଲିଆସେ । ଏମିତି ଭାବି ବୁଢ଼ା ଯାଉଥାଏ । ଯାଉ ଯାଉ ରମେଶ ରହିଥିବା ଗାଁରେ ପହଞ୍ଚିଲା । ସେତିକିବେଳେ ରମେଶର

ପୁଅ ଜଗୁ ସ୍କୁଲରୁ ଫେରୁଥାଏ । ଯେମିତି ଦେଖିଲା ପାଚିଲା ନିଶୁଆ ଦାଢ଼ୀଆ ବୁଢ଼ାଟିଏ । ଦୌଡ଼ିଯାଇ ତା’ ପଛରୁ ତା କଚୁଟା ଟାଣିଦେଲା । ଅନ୍ୟ ପିଲାମାନେ ହସି ଉଠିଲେ । ବୁଢ଼ା ପଛକୁ ବୁଲିଦେଲା ବେଳକୁ ଗ୍ଲେଟ ପିଲାଟିଏ ହସୁଛି । ଆଉ ତା’ ସହିତ ପିଲାଗୁଡ଼ିକ ମଧ୍ୟ ହସୁଛନ୍ତି । ବୁଢ଼ା ତା’ର ନାତିକୁ ଚିହ୍ନି ପାରିଲାନି ସେ କହିଲା—ଆରେ···

ଏ ପିଲାଗୁଡ଼ିକ ବଡ଼ ଦୁଃଷ୍ଟ ଦେଖୁଛି ।

ଜଗୁ କହିଲା—କରେ ବୁଢ଼ା କୁଆଡ଼େ ଯାଉଛୁକ ? ତୋ ବୁଢ଼ୀ କାହିଁ ।

—ଗ୍ଲେପ୍···

—କ’ଣ···ବୁଢ଼ୀକଥା କହିଲାରୁ ଦେହରେ ଲାଗିଗଲା କରେ ?

—ଆରେ ହେ ପିଲା ଶୁଣୁ ?

—କ’ଣ, ବାଡ଼ି ମାରିବ ?

—ନାଁ, ମାରିବନି, ଏଠିକି ଆ···ଗୋଟେ ଭଲକଥା କହିବି ।

ବୁଢ଼ା ଦେଖିଲା ପିଲାଟି ଭାରି କୌତୁକିଆ ହୋଇଛି । ତା’ର ନାତି କଥା ମନେପଡ଼ିଲା ସେ ଭାବିଲା ମୋର ନାତି ଏତିକି ବଡ଼ ହୋଇଥିବଣି ଏମିତି ଭାବୁଛି । ଜଗୁ ବୁଢ଼ାର ଗାମୁଛା ଛଡ଼ାଇ ନେଲା ।

—କରେ, ଏଠିକିଆ···ମୁଁ ତୋତେ ମାରିବନି ।

—ପଇସା ଦେବ ? ଜଗୁ କହିଲା···

—ହଁ···ତୁ ମୋ ପାଖକୁ ଆ···

ଜଗୁ ସାହସର ସହିତ ବୁଢ଼ାପାଖକୁ ଗଲା ବୁଢ଼ା ଖୁସିରେ ତା’ ପିଠିକି ଆଉଁସିଦେଲା, ପଚାରିଲା—

—ତୋ ନାଁ କ'ଣ ?

—ଜଗୁ !

—ତୋ ଭଲ ନାଁ··· ?

—ଜଗେନ୍ କୁମାର ମହାନ୍ତି···

— ତୋ ବାପାଙ୍କ ନାଁ··· ?

—ଶ୍ରୀ ରଜତ କୁମାର ମହାନ୍ତି ।

—ତୁମ ଘର ?

—ଏଇ ଗାଁରେ···

—ତୁମ ଘରେ ଆଉ କିଏ ଅଛନ୍ତି ।

—ମୋ' ମାଆ, ଆଉ ବାପା ।

—ତୁ ପାଠ ପଢ଼ୁଛୁ ।

—ହଁ···

—ତୋ ବାପା କ'ଣ କରନ୍ତି ।

— ମୋ ବାପା ଦୋକାନ କରନ୍ତି ।

—କି ଦୋକାନ···

— ଡାଲି, ଗୁଡ଼ଲ, ଅଟା, ତେଲ, ଚକଲେଟ, ଚେନାଚୁର ।

—ଆଚ୍ଛା ତୋ ବାପା ତତେ ଚକ୍‌ଲେଟ ଦିଅନ୍ତି ।

—ହଁ···ସବୁଦିନେ ନୁହେଁ·· କେବେ କେମିତି ।

—ଆଚ୍ଛା ମୁଁ ତୋତେ ଚକ୍‌ଲେଟ ବହୁତ ଦେବି । ତୁ ମୋ ସହିତ ଆମ ଘରକୁ ଯିବୁ ?

— ହଁ···ତୁମ ଘରେ କିଏ ଅଛନ୍ତି ।

—ତୋ ପରି ପିଲା ସବୁ । ତୁ ଗଲେ ସେମାନଙ୍କ ସହିତ ଖେଳିବୁ ।

—ହଁ ମୁଁ···ଯିବି···

ବୁଢ଼ା ଖୁସି ହୋଇଗଲା ତାକୁ କାଖେଇ ନେଇ ଆସିଲା···ତା' ଘରକୁ ତାକୁ ଖାଇବାକୁ ଦେଲା, ଚକ୍‌ଲେଟ ଦେଲା । କହିଲା ମୋତେ ଜେଜେ ବାପା ବୋଲି ଡାକିବୁ । ଜନ୍ତୁ, କହିଲା ହଁ···

ତା'ପରେ ବୁଢ଼ା ମୁଣ୍ଡକୁ ଗୋଟେ କଥା ଜୁଟିଲା ସେ କ'ଣ କଲା ଜନ୍ତୁକୁ ଆଣି ଯେଉଁ ଘରେ ସୁନା, ରୂପା ଟଙ୍କା ପ୍ରଭୃତି ରଖିଥିଲା । ସେ ଘରଆଡ଼େ ବୁଲାଇ ନେଇ ଗଲା । ସେ ଘରଟା ତ ମାଟିତଳେ ହୋଇଥାଏ ।

ବୁଢ଼ା କ'ଣ କଲା ଜନ୍ତୁକୁ କହିଲା । ହେଇଦେଖ ସେ ଘରେ ବହୁତ ଚକ୍‌ଲେଟ ଅଛି । ତୁ ସେ ଭିତରକୁ ଯାଇ ଯା ବହୁତ ଆଣିବୁ । ତୁମ ଘରକୁ ନେବୁ ଏହା କହି ସେ ଘରକୁ ସିଡ଼ି ଦେଖାଇ ଦେଲା । ଜନ୍ତୁ ସିଡ଼ି ଦେଇ ତଳକୁ ଓହ୍ଲାଇଲା । ତା'ପରେ ଯାଇ ସେ ଘରେ ଦେଖିଲା ଖାଲି ସୁନାରୂପା ଟଙ୍କା ।

କିନ୍ତୁ ଚକ୍‌ଲେଟ ନାହିଁ । ଏତିକି ବେଳେ ବୁଢ଼ା କ'ଣ କଲା । ସିଡ଼ି କାଢ଼ିଦେଲା । ଆଉ କବାଟ ଦେଇ ଦେଲା ଉପରୁ । କବାଟ ଉପରେ ମାଟିପକାଇ ଦେଲା । ଜନ୍ତୁ ଭିତରୁ କାନ୍ଦି ଉଠିଲା କହିଲା—ଜେଜେ ବାପା କବାଟ ଫିଟାଅ ସିଡ଼ି ଲଗାଅ । ମୁଁ ଯିବି ଏଠି ଚକ୍‌ଲେଟ ନାହିଁ । କିଛି ନାହିଁ ।

ହେଲେ ବୁଢ଼ା ସେ କଥା ଶୁଣି ମଧ୍ୟ ନ ଶୁଣିଲା ପରି ଫେରି ଆସିଲା ଘରକୁ । ଘରେ ପହଞ୍ଚି ବହୁତ ଖୁସି ହେଲା । ଭାବିଲା ଭାବି ଥିଲି ଏସବୁ ଧନ ନାତିକୁ ଦେବି । ହେଲେ ତା' ଭାଗ୍ୟରେ ନାହିଁ ଯାହାହେଉ ଏ ପିଲାଟି ପାଇଲା । ଏମିତି ଭାବି ନିଶ୍ଚିନ୍ତ ହୋଇ

ରହିଲା । ହେଲେ ତା କାନରେ ବାଜୁଥାଏ—ଜେଜେ ବାପା କବାଟ ଫିଟାଅ । ସିଡ଼ି ଲଗାଅ ମୁଁ ଯିବି ଏଠି ରହିବି ନାହିଁ, କହୁ ନାହିଁ । ମୁଁ ଯିବି···ମୁଁ ଯିବି···ମୁଁ ଯିବି ।

ଏଣେ ସ୍କୁଲରୁ ଫେରିବା ଡେରି ଦେଖି ରମେଶ ସ୍କୁଲ ଗଲା । ସ୍କୁଲ ସେତେବେଳକୁ ବନ୍ଦ ହୋଇ ସାରିଥାଏ । କିଏ କୁଆଡ଼େ ନଥାନ୍ତି । ରମେଶ ସେଠାରେ କେତେ ପିଲାଙ୍କୁ ଜଗୁ ବିଷୟରେ ପଚାରିଲେ । ପିଲାମାନେ କହିଲେ ସେ କେତେ ବେଳୁ ଗଲାଣି ରମେଶ ମନରେ ସନ୍ଦେହ ହେଲା ଗ୍ରେଟ ପିଲା କୁଆଡ଼େ ଚଲା ବାଟ ପାଇଲାନ ନା କ'ଣ ।

ଏମିତି ଭାବି ଭାବି ଜଗୁ ସହିତ ଯାଉଥିବା ପିଲା ମାନଙ୍କୁ ପଚାରିଲା । କହେ ଜଗୁ କାହିଁ ? ତୁମେମାନେ ସବୁ ଅଛ ଜଗୁ ?

ସେ ପରା ଗୋଟେ ବୁଢା ସହିତ ଖେଳୁଥିଲା । ଗୋଟେ ପିଲା କହିଲା ।

—କେଉଁଠି ?

—ଏଇ ସେ ଯେଉଁ ଘର ଅଛି···ସେଠି ।

—କାହିଁ···ସେଠାରେ ନାହିଁ ତ ?

—ସେ ବୁଢ଼ା ସହିତ ସେ ପରା ଗଲା ।

— କୁଆଡ଼େ··· ?

—କେଜାଣି···ଆମେ ଜାଣି ନାହୁଁ ।

—ସେ କେଉଁ ରାସ୍ତାରେ ଗଲା ।

—ସେ ବରଗଛ ଆଡ଼େ ଯେଉଁ ରାସ୍ତା ପଡ଼ିଛି ।

ଏହା କହି ପିଲାମାନେ ଖେଳରେ ମାତିଲେ । ହେଲେ ରମେଶ ଏକଥା ଶୁଣି କାନ୍ଦ ପକାଇଲା । ଗୋଟେ ବୋଲି ପିଲା । ସେ ସଙ୍ଗେ

ସଙ୍ଗେ ସେ ବାଟେ ଗଲା । ସେ ରାସ୍ତା ଟା ତାଙ୍କର ଗାଁ ଆଡ଼େ ଯାଇଥିଲା । ସେ ଯେବାଟେ ଯେତେ ବୁଢ଼ାଙ୍କୁ ଦେଖିଲା ସମସ୍ତଙ୍କୁ ଜଗୁ ବିଷୟରେ ପଚାରୁଥାଏ । ହେଲେ ସମସ୍ତେ ମନାକରୁଥାନ୍ତି ଆମେ ଜାଣିନାହୁଁ । ନାହିଁ ପଦ ଶୁଣି ଶୁଣି ରମେଶ ଯାଇ ତା' ଗାଁ ମୁଣ୍ଡରେ ପାଦ ଦେଲା । ଗାଁର କେତେ ଜଣ ଭଦ୍ରଲୋକ ରମେଶକୁ ଦେଖି କହିଲେ କିରେ କୁଆଡ଼େ ଏତେ ଦିନ ପରେ ଦେଖା । କ'ଣ ବାପାକୁ ଦେଖା କରିବାକୁ ଆସିଛୁ ।

—ହିଁ—କହିଲା···ରମେଶ ।

—ଆରେ । ଏତେ ରାତିରେ ।

—କେତେ ରାତି ? ଆଠଟା ନଅଟା ହେବ ।

—ହଉ···ଜା···ବୁଢ଼ା ବାପା ଏଇନେ ଏକା ବସିଥିବେ ।

—ହଁ— ଯିବି···ହେଲେ ତୁମକୁ ଗୋଟେ କଥା ପଚାରୁଛି ।

—କଣ'

—ଆଚ୍ଛା ଆଜ ବାପା ଗୋଟେ ପିଲାକୁ ଘରକୁ ଆଣିଥିବାର କିଏ ଦେଖିଛ କି ?

—ହିଁ···ହିଁ - ୫, ୬ ବର୍ଷର ପିଲାଟି । ଏଇ ଚାରିଟା ବେଳେ ବୁଢ଼ା ସହିତ ଖେଳୁଥିଲା ।

—ତା' ପରେ ।

—ତାପରେ ଦୁହେଁ ଏଇ ସନ୍ଧ୍ୟାବେଳେ କୁଆଡ଼େ ଯାଇଥିଲେ । ବୋଧେ ପିଲାଟିକୁ ତା'ଙ୍କ ଘରେ ଛାଡ଼ିବାକୁ ଯାଇଥିଲେ । ଆସିଲା ବେଳକୁ ଏକା—ହୋଇ ଘରେ ଅଛନ୍ତି ।

— ଆଚ୍ଛା ପିଲାଟି କେମିତିଆ ରଙ୍ଗ ସାର୍ଟ ପିନ୍ଧିଥିଲା । କହିପାରିବ ।

—ଏତେ କଥା ମନେ ନାହିଁ । ଗୋଟିଏ ପିଲଟିଏ । ଖୁବ ସୁନ୍ଦର ।

—ଆଚ୍ଛା···ଏହା କହି ରମେଶ ଗଲେ । ଜନ୍ମ ସ୍ଥାନକୁ । ଯାଇ କବାଟରେ ହାତ ବାଡ଼େଇଲେ ।

—କିଏ ? ଘରୁ ଉତ୍ତର ଆସିଲା ।

—ମୁଁ···

—କିଏ··· ?

—ମୁଁ ରମେଶ···

—ଆରେ ରମେଶ ! ରମେଶ ! କହି ବୁଢ଼ା କବାଟ ଖୋଲିଲେ ।

—ବାପା ! ତୁମେ ଜଗୁକୁ ଆଣିଥିଲ ?

—ଜଗୁ ? ସେ କିଏ ?

—ସେ ମୋ ପୁଅ, ତୁମ ନାତି···

—ନାଁ ।

— ହଁ ତୁମେ ଆଣିଛ । ସମସ୍ତେ କହୁଛନ୍ତି । ତାକୁ ଛାଡ଼ ।

— ବୁଢ଼ା ମୁଣ୍ଡରେ ବଜ୍ର ପଡ଼ିଲାଭଳି ଲାଗିଲା ସେ ତାର ନିଜ ନାତିକୁ ସେ ପଥର ଘରେ କବରଦେଇ ଆସିଛି । ଏକ୍ଷଣି ସେ କ'ଣ ଆଉ ଜୀବନରେ ଥିବ ? ମୁଁ କ'ଣ କଲି । ଏମିତି ଭାବୁଛି । ତା'କୁ ଶୁଭିଲା, "ଜେଜେ ବାପା ! କବାଟ ଖୋଲ । ମିଠା ଲଗାଅ ମୁଁ ଯିବି । ଏଠି ଚକୋଲେଟ୍ ନାହିଁ କିଛି ନାହିଁ । ମୁଁ ଯିବି···ମୁଁ ଯିବି !······

ବୁଢ଼ା ଚୁପ୍ ରହିବାର ଦେଖି ରମେଶ କହିଲେ ଚୁପ୍ ରହିଲ କାହିଁକି କୁହ ମୋ ପୁଅ କାହିଁ ? ତା'କୁ ତୁମେ କେଉଁଠି ଲୁଚାଇ ରଖିଛ?

—ବୁଢ଼ା ଏକଥା ଶୁଣି ଭୂଷକରି ତଳେ ପଡ଼ିଗଲା ଆଉ କିଛି ନାହିଁ । ଚେତାଶୂନ୍ୟ···

ରମେଶ ଦୌଡ଼ିଯାଇ ପାଣି ଆଣି ଛିଞ୍ଚିଲା ବୁଢ଼ା ମୁହଁରେ । ବୁଢ଼ାର ହୋସ ଆସିଲା···ସେ ଆସ୍ତେ ଆସ୍ତେ କହିଲା —ରମେଶ··· ତୋ ପୁଅ···ପଥର ଘରେ·· ସମାଧିରେ···ଅଛି···ଏତିକ କହି ବୁଢ଼ା ଚୀର ଦିନ ପାଇଁ ଆଖି ବୁଜିଲା —ରମେଶ —ବାପା ! ବୋଲି ଚିତ୍କାର କରି ଉଠିଲା···ସଙ୍ଗେ ସଙ୍ଗେ ଘରୁ ଦୌଡ଼ିଲା ତା' ଘରଆଡ଼େ ତା' ପରେ······



## ଜିତୁର ପୁନର୍ଜନ୍ମ

ଘରେ ପହଞ୍ଚି ସ୍ତ୍ରୀକୁ କ'ଣ କହିବ କିଛି ଠିକ୍‌କରି ପାରିଲାନି । ତା' ମୁହଁରୁ କଥା ବାହାରୁ ନଥାଏ । ଏପରି ଅବସ୍ଥାରେ ଦେଖି ତା'ର ସ୍ତ୍ରୀ ସୁଷମା ପଚାରିଲା—

—କ'ଣ ପୁଅକୁ ପାଇଲ ?

—············

—କ'ଣ କିଛି ବହୁନ ?

—············

—ଆରେ ଏମିତ ଚୁପ୍ ହିଁଛ କ'ଣ ।

—ହଁ······

—ହଁ – କ'ଣମ । ପୁଅ କେଉଁଠି ଅଛି ?

—ଅଛି···

—କେଉଁଠି···

—ସମାଧି···ମଧ୍ୟରେ···

—କ'ଣ କହୁଛ ? ? ?

ଏହା କହି ସୁଷମା ରମେଶଙ୍କୁ ହଲାଇ ଦେଲା କହିଲା ସାହା କହୁଛ ସଫାକରି କୁହ । ଏମିତି କ'ଣ କହୁଛ, ମୋ ଜନ୍ତୁ କାହିଁ ।

ଜନ୍ତୁ ଅଛି, ପଥର ଘରେ···ଯେଉଁ ଘରେ ବାଟ ନାହିଁ ସୂର୍ଯ୍ୟ ଲୋକ ଟିକେ ପଡ଼ିବା ପାଇଁ, ବାଟ ନାହିଁ ବାହାର ପବନ ଟିକେ ଯିବ । ସେ ଘରେ ତୁମ ପୁଅ ଜନ୍ତୁ ମହା ଆନନ୍ଦରେ ରହିଛି ।

—ଆରେ ଏ ତୁମେ କ'ଣ କହୁଛ । ବ୍ୟାକୁଳ ହୋଇ ସୁଷମା ପଚାରିଲା ।

—ଆଜ ତାଙ୍କୁ ସେଠାରେ କିଏ ନେଇ ପହଞ୍ଚାଇଛି ଜାଣ ? ସେ ଆଉ କେହି ନୁହନ୍ତି । ସେ ହେଉଛନ୍ତି ତାର ଜେଜେ ବାପା ସୁରଦାସ' ।

ଏଁ ମୋ ଜନ୍ତୁ···କହି ସୁଷମା ତଳେ ପଡ଼ି କାନ୍ଦିଲା···କହିଲା ମୋ ଜନ୍ତୁକୁ ଆଣି ଦିଅ ।

—ତୁମ ଜନ୍ତୁ ଅଛି । ହେଲେ ସୁରଦାସ·· ସେ ଆଜ ଇହ ଧାମରେ ନାହାନ୍ତି ।

—ଏଁ କ'ଣ କହୁଛ···ଭଲ ଭାବେ କୁହ···ମୁଁ କିଛି ବୁଝି ପାରୁନ ।

—ବୁଝି ପାରୁନ ! ତେବେ ଶୁଣ । ମୋର ବାପା ସୁରଦାସ ଜନ୍ତୁକୁ ନେଇ ତାଙ୍କ ଅମୂଲ୍ୟ ରତ୍ନ ଭଣ୍ଡାର ଘରେ ରଖିଛନ୍ତି । ଆଜ ସେ ଏକ୍ଷଣି ମୃତ । ବୁଝିଲ···

— ତୁମେ ଯାଅ ଜନ୍ତୁକୁ ଆଣିଆସ ।

—ଜନ୍ତୁ··ସେ ଆଉ ପୃଥିବୀ ଆଲୋକକୁ ଦେଖି ପାରିବନି ସେ ସେଠାରେ ଚୀରଦିନ ପାଇଁ ରହିଲେ···ସେ ବି ମୃତ । ମୁଁ କ'ଣ କରିବି ।

ଏ କଥା ଶୁଣି ସୁଷମା ଚେତା ଶୂନ୍ୟ ହୋଇଗଲା । ସେଠାର ଲୋକେ ଦୌଡ଼ି ଆସିଲେ । କ'ଣ ହେଲା କ'ଣ ହେଲା ପଚାରିଲେ ରମେଶକୁ । ରମେଶ କିଛି ନ କହି ପୁଣି ତା'ର ବାପା ପାଖକୁ ଆସିଲା । ସେତେବେଳକୁ ସୁର ଦାସଙ୍କର ମାଟି ପିଣ୍ଡଟା ପଡ଼ିରହି ଥାଏ ।

ରମେଶ ଗାଁର କେତେକ ଲୋକଙ୍କୁ ଧରି ଶବ ଦାହ କଲା । କିନ୍ତୁ ଏସବୁ ବିଷୟରେ କିଛି କାହାକୁ କହିଲା ନାହିଁ । ଲୋକେ ପଚାରିଲାରୁ ବାପା କେମିତି ମଲେ ? ସେ କହିଲା ଦେହ ବୋଧେ ଖରାପ ଥିଲା । ହଠାତ୍ ମରିଗଲେ ।

× × ×

ତା'ପରେ ରମେଶ ବାପାଙ୍କର ସୁଦ୍ଧି କ୍ରିୟା କର୍ମ ସାରିଲା ! ଏବଂ ତାର ବସାଘର ଗୁଡ଼ି ପୁଣି ନିଜ ଘରକୁ ବାହୁଡ଼ି ଆସିଲା । ଘରର ଦାଇତ୍ୱ ସବୁ ବୁଝିଲା ! ଜମି ଜମା, ବନ୍ଧକ, କରଜ, ଗାଁ ଲୋକେ ଯାହାକିଛି ସବୁ ସୁରଦାସ ଠାରେ କରିଥିଲେ ତା'କୁ ସବୁ ରମେଶ ସୁରୁଖୁରୁରେ ତୁଲାଇଲା ସବୁ କାମ କରେ । ହେଲେ ଜିନ୍ତୁ କଥା ତା'ର ମନେ ପଡ଼େ ।

ସୁଷମା ମଧ୍ୟ କେତେ ଥର କହିଲାଣି ଯେ, ସେ ପଥର ଘର କବାଟ ଖୋଲି ଖୋଲିବା । ଦେଖିବା, କ'ଣ ହୋଇଛି । ରମେଶ ସବୁ ଶୁଣେ ହେଲେ, କାହିଁକି ଖୋଲିବ ! ଯଦି ଜିନ୍ତୁ ନଥାଏ ତେବେ ? ?

ଏମିତି ଭାବି ଚୁପ୍ ରହେ । ସୁଷମା ଜିଦ୍ କଲେ କହେ ହଉ ଦେଖିବା ।

ସବୁଦିନ ସମାନ ଯାଏ ନାହିଁ । ଦିନେ ରମେଶ ଶୋଇଛି । ରାତିରେ ସ୍ୱପ୍ନ ଦେଖିଲା—ଜିନ୍ତୁ ଆସି କହୁଛି ବାପା ! ତୁମେ ମୋ ଉପରେ ରାଗିଛ । ହଁ ମୁଁ ତୁମ କଥା ନ ମାନି ଅବାଧ ହୋଇଛି ।

ଆଜି କେତେ ବାପା ତାର ଫଳ ସ୍ୱରୂପ ମୋତେ ଏଠାରେ ବନ୍ଦ କରି ରଖିଛନ୍ତି । ବାପା ! ତୁମେ ମତେ ଏଠାରୁ ନେଇଯାଅ । ମୁଁ କିଛି ଖାଇନି । ମୋତେ ଭୀଷଣ ଶୋଷ ହେଉଛି । ବାପା ! ମୋତେ ଏଠାରୁ ରକ୍ଷାକର । ସତ କହୁଛି । ଆଉ କେବେ ତୁମ କଥାରେ ଅବାଧ୍ୟ ହେବିନି । ମତେ ଏଠାରୁ ନେଇ ଯାଅ ବାପା ! ମୁଁ ଏଠାରେ ନିଃଶ୍ୱାସ ମାରି ପାରୁନି । ଏମିତି ସ୍ୱପ୍ନ ଦେଖି ରମେଶର ନିଦ ଚଟ୍ କରି ଭାଙ୍ଗିଗଲା । ସେ କ'ଣ କରିବ କିଛି ଠିକ୍ କରି ପାରିଲାନି । ସୁଷମାକୁ ଡାକି ସବୁକଥା କହିଲା । ସୁଷମା କାନ୍ଦିଲା । କହିଲା କେତେ ଦୁଃଖ କଷ୍ଟରେ ତାକୁ ଏତେବଡ଼ କରିଥିଲି । ହେଲେ ଭଗବାନ ସହି ପାରିଲେନି ।

ତୁମେ କାଲି ସଖାଙ୍କୁ ଯାଇ ସେ କବାଟ ଲୋକ ଲଗାଇ ଖୋଲି ମୋ ପୁଅକୁ ବାହାର କର । ସେ ନିଶ୍ଚୟ ବଞ୍ଚିଛି ।

ଏକଥା ଶୁଣି ରମେଶ ହସି ପକାଇଲା । ହେଲେ ସେ ହସରେ କିଛି ନ ଥିଲା ସେ ଥିଲା ଶୁଷ୍କ । ସେ କହିଲା-ଏତେଦିନ ହେଲାଣି । ଗୁହ୍ମି ଗୁହ୍ମି ଦୁଇମାସ ହୋଇଗଲା ଜଡୁ ଯଦି ବଞ୍ଚିଥାଏ ତେବେ ସେ କ'ଣ ଖାଇ ବଞ୍ଚିଛି ? ସେ କ'ଣ ସୁନା, ରୁପା, ହୀରା, ମୋତି, ଖାଇ ବଞ୍ଚିଛି । ନାଁ···ସେ ମିଛ···ତା'ର ଅତୃପ୍ତ ଆତ୍ମା ତୃପ୍ତ ହୋଇନାହିଁ ସେ···ହା···ହା । ହେଉଛି ।

ହଉ ! ରାତିପାହି ଦେଖିବା । କହି ପୁଣି ଶୋଇଲେ । ହେଲେ ରାତିରେ ନିଦ ହେଲା ନାହିଁ ।

ସଖାଙ୍କୁ ଉଠି ନିତ୍ୟକର୍ମ ସାରି କେତେ ଜଣ ଲୋକଙ୍କୁ ନେଇ ସେ ପଥର ଘର ନିକଟରେ ପହଞ୍ଚିଲା । ଲୋକମାନଙ୍କୁ କହିଲା ଏ ପଥର କବାଟ ଖୋଲ ।

ଲୋକମାନେ ଯେତେ ଚେଷ୍ଟାକଲେ ଖୋଲି ପାରିଲେନି ସେ କବାଟ ।

ନିରାଶ ହୋଇ ଫେରି ଆସିଲେ । କେହି କେହି ଏକଥା ଶୁଣି କହିଲେ—ସେଠାରେ ବଳିଫଳି ପକାଅ । ହୋମ, ପୂଜାର୍ଚ୍ଚନା କରି ଯଦି ହୁଏ ଖୋଲିବାକୁ କ'ଣ, ଆଉ ନହେଲେ ନାହିଁ ।

ଲୋକମାନଙ୍କ କଥାକୁ ବିଶ୍ୱାସ କରି ରମେଶ ଦିନେ ଗୋଟେ ବଡ଼ ଗୁଣିଆକୁ ଡକାଇଲା ।

ଗୁଣିଆ ଦେଖିବାକୁ ଖୁବ୍ ଭୟଙ୍କର । ଜଟାଜୁଟ ଗୁଡ଼ ଖଣ୍ଡେ ହାଡ଼ଧରି ପହଞ୍ଚିଲା ରମେଶକୁ କ'ଣ ହୋଇଛି କ'ଣ କରିଛୁ । ପଚାରିଲା ରମେଶ ଘଟଣାଟା ବର୍ଣ୍ଣନା କଲା । ତାକୁ ଶୁଣି ଗୁଣିଆ କହିଲା ଓ ଏଇକଥା—ଆଚ୍ଛା ଦେଖିବା ସେ କବାଟ ମୁଁ ଖୋଲି ଦେବି ।

—କ'ଣ, କ'ଣ ଦରକାର ମତେ ଟିକେ କୁହନ୍ତୁ । ରମେଶ ପଚାରିଲା ଗୁଣିଆକୁ ।

—କିଛି ଦରକାର ନାହିଁ ଖାଲି ୨୫୦ ଗ୍ରାମ ଚୂଣା, ଗୁଆଘିଅ ୫୦୦ ଗ୍ରାମ, ଦୁଇଟା କଳା କୁକୁଡ଼ା, ଖଣ୍ଡେ ବସ୍ତ୍ର ଗୋଟେ କଳସ, ଆଉ ଧାଡ଼ା ହୋଗ, ଫୁଲ, ଆଉ ୨୧ଜଣ ଲୋକ ଦରକାର ।

ରମେଶ ଗୁଣିଆ ଘରେ ବସାଇ ଚାଲି ସବୁ ଜୋଗାଡ଼, କରିବା ପାଇଁ ।

କିଛି ସମୟ ପରେ ରମେଶ ଫେରିଆସିଲା ଜୋଗାଡ଼କରି ଠିକ୍ ଦିନ ତିନିଟା ସମୟରେ ସମସ୍ତେ ଗଲେ ସେ ପଥରଘର ନିକଟକୁ ।

ଲୋକମାନଙ୍କୁ ବହୁତ ଦୂରରେ ରହିବା ପାଇଁ ଗୁଣିଆ ରମେଶକୁ ନିର୍ଦ୍ଦେଶ ଦେଲା । ଲୋକମାନେ ଦୂରେଇ ଗଲେ । ତା'

ପରେ ରମେଶ, ସୁଷମା ଦୁହେଁ ଗାଧୋଇ ନୂଆଲୁଗା ପିନ୍ଧି ବସିଲେ । ପୂଜା ଆରମ୍ଭ ହେଲା ଗୁଣିଆ ମନ୍ତ୍ର ପଢ଼ିଲା । ତା'ପରେ ସେ ପଥର କବାଟକୁ ପୂଜାକଲା, ଧୂପ, ଦୀପ, ଝୁଣା, ଫୁଲଦେଇ ମନ୍ତ୍ର ପଢ଼ି କବାଟ ଖୋଲିବା ପାଇଁ ନିବେଦନ କଲା । ତା'ପରେ ଲୋକମାନଙ୍କୁ ଡକାଇଲା କହିଲା "ଜୟ ମହାକାଳୀ କହି ପଥର କବାଟକୁ ଫିଟାଅ ସମସ୍ତେ ତାହାହିଁ କଲେ କିନ୍ତୁ କିଛିଫଳ ହେଲା ନାହିଁ ।

ତା' ପରେ ଗୁଣିଆ କୁକୁଡ଼ା ଦୁଇଟିକୁ ବଳିଦେଲା କଳସ ପୂଜାକଲା । ପୁଣି କିଛି ମନ୍ତ୍ର ପଢ଼ିଲା । ଲୋକମାନଙ୍କୁ କହିଲା ଏଥର ପୂର୍ବଥର କହିଥିବା କଥା କହି ଠେଲ । ଲୋକମାନେ ତାହାହିଁ କଲେ କବାଟ ଖୋଲିଗଲା । କିନ୍ତୁ···

ସେ ଘରଭିତର ଅନ୍ଧକାରରେ ପରିପୂର୍ଣ୍ଣ ଥିଲା ଗୁଣିଆ ସେ ଘର ଭିତରକୁ ଦୀପ ନେଇ ପ୍ରଥମେ ପଶିଲା ତା'ପରେ ରମେଶ । ଓ ତାର ସ୍ତ୍ରୀ ଗଲେ । ଦୀପ ଆଲୁଅରେ ଦେଖିଲେ ତା' ଭିତରେ କିଛି ନ ଥିଲା । କେବଳ ଦୁଇ ଖଣ୍ଡ ଖଣ୍ଡି ଅସ୍ଥି ହିଁ ପଡ଼ି ରହିଥିଲା ।

ସୁଷମା ବିକଳରେ "ଜନ୍ତୁ" ବୋଲି ଡାକିଲା ଠିକ୍ ଡାକିବାବେଳେ ହୁଁ···କରି ପବନ·ପଥର ଦ୍ୱାର ଦେଇ ବାହାରକୁ ଚାଲିଗଲା ଆଉ ଶୁଭିଲା "ବାପା ! ମୁଁ ବହୁତ ଖୁସି । ହେଲେ ମୁଁ ତୁମ ନିକଟକୁ ଏବେ ଫେରି ପାରୁନି । ମୁଁ ଚାଲି ଯାଉଛି ମୋର ଆଦରଣୀୟ ଜେଜେଙ୍କ ନିକଟକୁ । ସେ ଗାଁ ମୁଣ୍ଡ ଶ୍ମଶାନରେ ଅଛନ୍ତି । ବିଦାୟ···

ତା'ପରେ ଚୁପ୍‌ଚାପ୍, ରମେଶ, ସୁଷମା, ଆବାକ୍ ହୋଇଗଲେ ।

ଗୁଣିଆ ଠୋ···ଠୋ···ହୋଇ ହସିଲା କହିଲା ଦେଖିଲ ଶୁଣିଲତ ସବୁ ଏଥର ଚାଲ ।

ତା'ପରେ ସମସ୍ତେ ସେଠାରୁ ଫେରି ଆସିଲେ ରମେଶ ଗୁଣିଆକୁ ତାର ପ୍ରାପ୍ୟ ଦେଇ ବିଦାୟ ଦେଲ । – ସ୍ୱାମୀ । ସ୍ତ୍ରୀ ଦୁହେଁ କଥା ହେଲେ ରମେଶ କହିଲା ।

– ଆଚ୍ଛା ଆମେ ସେ ଘରେ କିଛି ଦେଖିଲେ ନାହିଁ ।

—ହଁ···ହତକଥା···

—ବାପା, ତବ ସେଠାରେ ବହୁମୂଲ୍ୟ ଜିନିଷ ରଖିଥିଲେ ।

—କାହିଁ ନାହିଁତ ।

—କୁଆଡ଼େ ଗଲା ।

—ବୋଧେ ଉଭେଇ ଯାଇଛି ।

—ହଁ···ପୁଅତ ଗଲା । ସୁନା ରୁପାରୁ କ'ଣ ମିଳିବ । ଯଦି ଆମ ଜିନିଷ ହୋଇଥିବ । ଆମର ହେବ ନ ହେଲେ ଯାଉ କ'ଣ ଅଛି ।

—ହଁ·· ଏ ସବୁ ଆମ ଭାଗ୍ୟ ।

ଏହାପରେ କିଛି ଦିନ ଚାଲିଗଲା । ସେ ଗାଁର ବଢ଼େଇଘର ପୁଅଟି ମରିଗଲା ! କିଛି ନାହିଁ ଠିକେ ବାନ୍ତିହେଲା ତା' ପରେ ସବୁ ଶେଷ । ତା'ର ମା' ବାପା ଭାଇ ଭଉଣୀ କେତେ କାନ୍ଦିଲେ ! ବାପା, ମା ଏତେବଡ଼ କରିଥିଲେ । ପିଲାଟା ବି ଭଲ ପଢ଼ୁଥିଲା ସୁନ୍ଦର ମଧ୍ୟ ତା' ପରି କେହି ନ ଥିଲେ । ହଠାତ୍ ଏମିତି ମରିଯିବ ଏକଥା କିଏ ଜାଣିଥିଲା ।

ଗାଁ ଲୋକମାନେ ବହୁତ ବୁଝାଇଲେ । ତା'ପରେ ପିଲାଟିର ମୃତଦେହକୁ ନେଇ ଶ୍ମଶାନରେ ପକାଇ ଦେଇ ଆସିଲେ ।

ସେତେବେଳେ ଦିନ ଗୁରଟା ସମସ୍ତ ହେବ । ବହୁତ ବୁଝାଇଲେ । ରମେଶ ସ୍ତ୍ରୀ ସୁଷମା ପିଲାଟିର ଅକାଳ ମୃତ୍ୟୁରେ ବଡ଼ ଦୁଃଖ ଅନୁଭବ କଲା ପିଲାଟି ଝିଙ୍କେ ଜନ୍ତୁପରି ଦେଖିବାକୁ । ରମେଶ ମଧ୍ୟ ତାକୁ ଭଲ ପାଉଥିଲା । ବେଳେବେଳେ ତା'କୁ ଘରକୁ ଡାକି ମିଠା ବିସ୍କୁଟ ଦେଉଥିଲା । କେତେ କଥା ପଚାରୁଥିଲା ତା'କୁ ଦେଖି ଜନ୍ତୁ କଥା ପ୍ରାୟ ଭୁଲି ଯାଇଥିଲା । କିନ୍ତୁ ହାୟ ! ନିୟତିର କି ଚକ୍ରାନ୍ତ ।

ଏମିତି ଭାବ ଭାବ ଦୁଇ ପ୍ରାଣୀଙ୍କର ସେ ଦିନ ରାତିରେ ଦିନ କଟି ନ ଥିଲା ଘଡିରେ ଶୋଇଛନ୍ତି ।·ଏତିକବେଳେ କିଏ କବାଟ ଠକ୍ ଠକ୍ କଲା ଦୁହିଁଙ୍କର ନିଦ ଭାଙ୍ଗିଗଲା । ରମେଶ—କହିଲା କିଏ ?

—ବାପା !

—କିଏ ? ? ?

—ବାପା । ମୁଁ···ଜନ୍ତୁ ।

ଆରେ ମୋ ଜନ୍ତୁ ! କହି ଦୌଡ଼ିଗଲା ରମେଶ କବାଟ ଖୋଲିବା ପାଇଁ । ସୁଷମା ମଧ୍ୟ ତା' ପଛେ ପଛେ ଦୌଡ଼ିଲା । ଦୌଡ଼ି ଯାଇ କବାଟ ଖୋଲି ଦେଲା ।

"ଆଶ୍ଚର୍ଯ୍ୟ—ନିଜ ଆଖିକୁ ବିଶ୍ୱାସକରି ପାରିଲା ନାହିଁ । କ'ଣ ସେ ଦେଖୁଛି । ଆଜ ଦୁଇଟାବେଳେ ଯିଏ ମୃତ ଥିଲା ସେ କ'ଣ··· ଠିଆ ହୋଇ ହସୁଛି । ସୁଷମା ଦୌଡ଼ିଗଲା ତା' ପାଖକୁ କିନ୍ତୁ ଏ କ'ଣ ପିଲାଟି ଘୁଞ୍ଚିଗଲା କିଛି ଦୂରକୁ ଯାଇ ହସି ହସି କହିଲା— ମୋତେ ଛୁଅଁ ନାହିଁ ଛୁଇଁଲେ ଖରାପ ।

—ଘରକୁ ଆ···

—ନାଁ ବାପା' ମୁଁ ଘରକୁ ଯିବା ଯୋଗ୍ୟ ନୁହେଁ ।

— କାହିଁକି ?

—ମୁଁ ମରିଯାଇଛି । କେବଳ ମୋ ଆତ୍ମା, ତୁମ ସହିତ କଥା କହୁଛି ।

—ତୁ, କିଏ ?

—ମୁଁ···ପରି ଜିତୁ···

—ଜିତୁ ? ? ?

—ହିଁ······

—ନାଁ ତୁ ମିଛ କହୁଛୁ । ତୁ ପରି ବଢ଼େଇ ଘର ପୁଅ ମିଣ୍ଟୁ ।

—ନାଁ ବାପା, ମିଣ୍ଟୁର ଶବରେ ମୁଁ ଅଛି । ନ ହେଲେ ମୁଁ କିପରି ଆସିଥାନ୍ତି ? ବାପା ! ବୋଉ ! ତୁମକୁ ଦେଖିବା ପାଇଁ ମୋର ଜେଜେଙ୍କୁ କହି ମୁଁ ଚାଲି ଆସିଛି । ଜେଜେ ଖୁବ ଖୁସି ଅଛନ୍ତି । ସେ ମୋତେ ଭଲ ପାଉଥିଲେ ତ । ମୁଁ ତା'ଙ୍କ ପାଖରେ ସବୁବେଳେ ରହିବି ବୋଲି ସେ ଚାହୁଁଥିଲେ । ମୁଁ ବି ତା'ଙ୍କ ପାଖରେ ରହିବାକୁ ଭଲ ଲାଗୁଛି ।

ବାପା ତୁମେ ଚିନ୍ତା କରନା, ମୁଁ ପୁଣି ତୁମ ପାଖକୁ ଫେରି ଆସିବି । ଗୋଟେ କାମ କଲେ ।

—କ'ଣ ?

—ତୁମେ ପୁଣି ପୂଜାକର ସେ ଗୁଣିଆକୁ ଡକାଇ···ଆଉ ବୋଉ ! ତୁ ଯଦି ଶିବ ମନ୍ଦିରରେ ତିନି·ଦିନ ଉପାସ ରହି ଶିବ ସହସ୍ର ଜପି ପାରିବୁ ତେବେ ମୁଁ ପୁଣି ତୁମ ପାଖକୁ ଫେରି ଆସିବି—କ'ଣ ଏତିକି କରିପାରିବ ? ? ?

—ହିଁ···ତୋ ପାଇଁ ଆମେ ସବୁ କରିପାରିବୁ ।

—ତେବେ ମୁଁ ପୁଣି ଫେରି ଆସିବ । ହିଁ ସେ ପଥର ଘରେ ଯେଉଁ ଅସ୍ଥି ପଡ଼ିଛି । ତା' ଉପରେ ଶିବଙ୍କର ପାଦୁକା ଛୁଆଁଇଦେବୁ, ତା'ର ୨୧ଦିନ ପରେ ମୁଁ ବଞ୍ଚିବ ।

—ହଉ କାଲିଠୁଁ ଆମେ ତାହା କରିବୁ ।

—ଏଥର ମୁଁ ଯାଉଛି ? ଜେଜେ ସେଆଡ଼େ ଖୋଜୁଥିବେ, ଯାଉଛି···

—ତା'ପରେ ପିଲାଟି ଅନ୍ଧାରରେ ଅଦୃଶ୍ୟ ହୋଇଗଲା । ରମେଶ, ସୁଷମା ଫେରିଆସି, କବାଟ ଦେଲେ । ଦୁହେଁ ଖୁବ ଖୁସି ହେଲେ ।

ତାପର ଦିନ ରମେଶ ଗୁଣିଆକୁ ଡକାଇ ଯାହା ଜଣୁ କହିଥିଲା କଲା ଶ୍ମଶାନରେ । ସୁଷମା ଉପାସ ରହି ଶିବ ମନ୍ଦିରରେ ବସି ଶିବସହସ୍ର ନାମ ଜପିଲା ।

ତିନି ଦିନଗଲା ଶେଷରେ ସୁଷମାର କାକୁତି ଜପ ଦେଖି ଶିବ ସହି ପାରିଲେ ନାହିଁ । ଖୁସି ହୋଇ ଫୁଲଟିଏ ପକାଇ ଦେଲେ । ତା'ହା ଆସି ସୁଷମା ହାତରେ ପଡ଼ିଲା । ତା'ପରେ ସୁଷମା ଆଖି ଖୋଲି ଖୁବ ଖୁସି ହୋଇଗଲା । ମନ୍ଦିରରେ ଢୋ ଢୋ କରି ମୁଣ୍ଡ ବାଡ଼େଇଲା ଯାହା ହେଉ ତା'କଥା ଈଶ୍ୱର ଶୁଣିଲେ ।

ତା' ପରେ ସେ ଫୁଲ ପାଣି ନେଇ ପଥର ଘରେ ଥିବା ଅସ୍ଥି ଉପରେ ଛୁଆଁଇଲା । ଫୁଲଟିକୁ ନେଇ ଅସ୍ଥି ଉପରେ ଥୋଇଦେଇ ଫେରି ଆସିଲା । ଏଣେ ରମେଶର ପୂଜାର୍ଚ୍ଚନା ଶେଷ ହୋଇସାରି ଥାଏ ।

ସେମାନେ ଅପେକ୍ଷା କଲେ ଏକୋଇଶ ଦିନ କେଉଁଦିନ ପୂରିବ ।

ସମସ୍ତ କାହାକୁ ଅପେକ୍ଷା କରେ ନାହିଁ । ସ୍ୱଳ୍ପ ସ୍ୱଳ୍ପ ଏକୋଇଶ ଦିନ ପୂରିଗଲା । ତା'ପରେ ଦୁହେଁ ଯାଇ କବାଟ ଖୋଲି ଦେଖିଲେ ସତକୁ ସତ ଜନ୍ତୁ ଶୋଇଛି । ଆଉ ସେ ଘରେ ସୁନା ରୂପା ଟଙ୍କାରେ ଭର୍ତ୍ତି ହୋଇଛି । ପ୍ରଥମେ ଯାଇ ଜନ୍ତୁକୁ ଉଠାଇଲେ । ଜନ୍ତୁ ଯେପରି କେତି ଦିନ ହେଲା ଶୋଇ ଯାଇଥିଲା ପରି ଉଠି ବସିଲା ।

ଆଉ ପ୍ରଥମେ ସେ ଜେଜେ ବାପାଙ୍କୁ ଖୋଜିଲା, ତାପରେ ବାପା, ବୋଉଙ୍କୁ ଦେଖି ଖୁସି ହୋଇଗଲା । ସୁଷମା, ରମେଶ ଜନ୍ତୁକୁ କୁଣ୍ଢାଇ ପକାଇଲେ ତାପରେ' ଠାକୁରଙ୍କୁ ନମସ୍କାର କରି ଫେରି ଆସିଲେ ।

ଗାଁରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ଲୋକେ ଧାଇଁଲେ ଜନ୍ତୁକୁ ଦେଖିବା ପାଇଁ । ରମେଶ ଘରେ ଲୋକ ରଣ୍ୟ । ରମେଶ ଘରି ଖୁସି ।

ସଙ୍ଗେ ସଙ୍ଗେ ପଥର ଘରୁ ସୁନା ଟଙ୍କା ରୂପା ନିଜ ଘରକୁ ବୋହି ଆଣିଲା । ଆଉ ତା ପର ଦିନ ଗୋଟେ ବଡ଼ ଭୋଜି କଲା । କେତେ ଖଣ୍ଡ ଗାଁର ଲୋକଙ୍କୁ ନିମନ୍ତ୍ରଣ କରି ଖିଆ ପିଆ କଲା ।

ସବୁ ଦେବା ଦେବୀଙ୍କର ପୂଜାର୍ଚ୍ଚନା କଲା—ତା'ପରେ ଜନ୍ତୁ କେମିତି ତା' ଜେଜେ ବାପା ସହିତ ପଥରକୁ ଆସିଥିଲା ବର୍ଣ୍ଣନା କଲା···ମୁଁ ଗଲାରୁ ମୋ ସହିତ କଥା କହିଲା ନାହିଁ·····



ସ ମା ପ୍ତ